# ଖଡିଆଳ-କୁସୁମ

( ୩ୟ ଭାଗ )

## ଗୀତି ଗୃଂଗୁଚ୍ଛ।




ସମ୍ପାଦନା :-

ନୀଲଲୋହିତ ସିଂହ ଦେବ

ଅଭୟ ଚରଣ ଚଲ୍ଲନ

ପ୍ରକାଶକ :- ଖଡ଼ିଆଲ ସାହିତ୍ୟ ସମିତି, ଖଡ଼ିଆଲ ।



ପ୍ରଥମ ମୁଦ୍ରଣ :- ୧୯୮୩ - ୫୦୦ ଖଣ୍ଡ



ମୂଲ୍ୟ :- ଟ: ୧୦/- ( ଦଶ ଟଙ୍କା )



ପ୍ରାପ୍ତି ସ୍ଥାନ :- ଖଡ଼ିଆଲ ସାହିତ୍ୟ ସମିତି କାର୍ଯ୍ୟାଳୟ,
ଖଡ଼ିଆଲ



ମୁଦ୍ରଣ :- ଖଡ଼ିଆଲ ପ୍ରିଣ୍ଟିଙ୍ଗ୍ ପ୍ରେସ, ଖଡ଼ିଆଲ
ଜି: କଳାହାଣ୍ଡି - ୭୬୬୧୦୭

# -: ମୁଖବନ୍ଧ :-

ଖଡ଼ିଆଳର ସାହିତ୍ୟ ସେବକମାନେ ମା ପଦ୍ମଲୋଚନାଙ୍କ ପୁରଣ ପୟର ୧୬୯୪ ମସିହାଠାରୁ ନିରବଚ୍ଛିନ୍ନଭାବେ ଆଜି ପର୍ଯ୍ୟନ୍ତ ସେବା କରି ଆସୁଛନ୍ତି । ଏହାର ଅନେକ ପ୍ରମାଣ ମିଳେ ।

ଖଡ଼ିଆଳ ମା ଭୂବନେଶ୍ୱରୀଙ୍କର ଯେ ଟଗୋଟିଏ ପୀଠସ୍ଥଳୀ, ଏହା ନିଃସ-ଙ୍କୋଚରେ କୁହାଯାଇ ପାରେ । ଶ୍ରୀ ଚୈତନ୍ୟ ଦାସ, ରାଜା ବୃନ୍ଦାବନ ସିଂହ ଓ ରାଜା ବୀରବିକ୍ରମ ଦେବ ଉତ୍କଳରେ ଉଚ୍ଚକୋଟିର ସାହିତ୍ୟିକ ରୂପେ ଆଜି ପରିଚିତ । ଏମାନଙ୍କ ଓଡ଼ିଆ ସାହିତ୍ୟ କୃତୀ ତାଳପତ୍ରମାନ ରହିଥିବାରୁ ଏ କ୍ଷୁଦ୍ର ଅଞ୍ଚଳ ମଧ୍ୟପ୍ରଦେଶରୁ ଆସି ଓଡ଼ିଶା ସହିତ ମିଶ୍ରିତ ହୋଇ ପାରିଛି, ଏଥିରେ ତିଳେମାତ୍ର ସନ୍ଦେହର ଅବକାଶ ନାହିଁ ।

ଲାଲ ଶିବନାରାୟଣ ଦେବ, ଶ୍ରୀ ବୀରବର ସିଂହ ନିନା ଓ ଶ୍ରୀ ମନୋ-ହର ମେହେରଙ୍କ ସାହିତ୍ୟ ମଧ୍ୟ ଉଚ୍ଚ ଧରଣର, କିନ୍ତୁ ସେ ଗୁଡ଼ିକ ଓଡ଼ିଶାର ଲୋକ ଲୋଚନକୁ ପ୍ରଚୁର ଅଭାବରୁ ଆସି ପାରି ନାହିଁ ।

ସ୍ୱର୍ଗତ ଶ୍ରୀ ରୁଦ୍ରମାଧବ ଦେବ ଜଣେ ପ୍ରସିଦ୍ଧ ଅନୁବାଦକ ଥିଲେ । ଉଚ୍ଚ ଧରଣର ସମାଲୋଚକ ହିସାବରେ ବର୍ତ୍ତମାନ ଶ୍ରୀ ପ୍ରୟାଗଦତ୍ତ ଯୋଷୀ ଓ ଶ୍ରୀ ମୋହିତ ମୋହନ ମହାପାତ୍ର ଯଥେଷ୍ଟ ସୁନାମ ଅର୍ଜନ କରିଛନ୍ତି । ଶ୍ରୀ ପ୍ରୟାଗଦତ୍ତ ଯୋଷୀ କ୍ଷେତ୍ରୀୟ ଭାଷାର ଗବେଷଣା ମଧ୍ୟ ଅଭିନିବେଶ ସହ କରୁଛନ୍ତି ଓ ଅନେକ ନୂତନ ତଥ୍ୟ ଆବିଷ୍କାର କରି ପାରିଛନ୍ତି ।

ବର୍ତ୍ତମାନ ସମୟର ସୁଲେଖକମାନେ ହେଲେ ଶ୍ରୀ ଗଦାଧର ମିଶ୍ର (କୋମନା), ଶ୍ରୀ କୈଳାସ ଚନ୍ଦ୍ର ଦଣ୍ଡସେନା (ନେହେନା), ଶ୍ରୀ ଜଗଦୀଶ ପ୍ରସାଦ ଯୋଷୀ(କରଙ୍ଗାମାଳ),ଦୀନବନ୍ଧୁ ପଟ୍ଟନାୟକ(ସୁନ୍ଦୋପାଲ) ପ୍ରଭୃତି ।

ଯୁବ ଲେଖକମାନେ ମଧ୍ୟ ଇତି ମଧ୍ୟରେ ବହୁତ ଉତ୍ସାହ ସହିତ ବାଣୀ ସାଧନାରେ ଲାଗିଛନ୍ତି । ଏହା ଅତ୍ୟନ୍ତ ଆଶାପ୍ରଦ ତଥା ଗୌରବର ବିଷୟ ।

ଆଜ ଶତବାର୍ଷିକୀ ଉତ୍ସବର ଶୁଭ ଦିବସେ ସାହିତ୍ୟ ସମିତି ଉପରେ ମା ବୀଣାପାଣିଙ୍କ ଫୁଲ ଚନ୍ଦନ ବର୍ଷିତ ହୋଇ ଉତ୍ତରୋତ୍ତର ସୁନାମ ଅର୍ଜନ କରୁ, ଏହାହିଁ ତାଙ୍କଠାରେ ମୋର ଆନ୍ତରିକ ନିବେଦନ ।

ଶୁଭେଚ୍ଛୁକ

କବି ସୌରଭ ଅନୁପ ସିଂହ ଦେବ,

ଖଡ଼ିଆଳ ।

# ଭୂମିକା –

ଖଡିଆଳ କୁସୁମ ପ୍ରଥମ ଭାଗ (ବୀରବର ରଚନାବଳୀ) ଓ ଖଡିଆଳ କୁସୁମ ୨ୟ ଭାଗ (ଗୀତ ମଞ୍ଜୁଷା) ଖଡିଆଳ ସାହିତ୍ୟ ସମିତି ଦ୍ୱାରା ୧୯୫୪ ମସିହାରେ ପ୍ରକାଶିତ ।

ଖଡିଆଳ କୁସୁମ ୧ମ ଭାଗରେ ସ୍ୱର୍ଗତ କବି ବୀରବର ସିଂହ ନିନାଙ୍କ ସମସ୍ତ ରଚନା ସ୍ଥାନ ପାଇଛି ଓ ଖଡିଆଳ କୁସୁମ ୨ୟ ଭାଗରେ ରାଜା ରନ୍ଧ ସିଂହ ଦେବଙ୍କଠାରୁ ଶ୍ରୀ ରଘୁନାଥ ମିଶ୍ରଙ୍କ ଯାଏ ମୋଟ ୨୩ ଜଣ ଲେଖକଙ୍କ କବିତା ସଂଯୋଜିତ ହୋଇଛି । ଏ ସବୁ ପ୍ରାୟ ୧୯୫୦ ମସିହା ପୂର୍ବରୁ ଲିଖିତ କବିତା ।

୧୯୪୨ ମସିହାରୁ ୧୯୮୨ ମସିହା ଯାଏ ଖଡିଆଳ ସାହିତ୍ୟ ସମିତିର ବିଭିନ୍ନ ଅଧିବେଶନ ଓ ଅବସରରେ ପଠିତ କବିତା ଗୁଡିକ ସଂଗୃହୀତ ହୋଇ ଗଚ୍ଛିତ ରହିଥିଲା । କବିତା ଗୁଡିକର ଶୈଳୀ ଓ ବିଷୟବସ୍ତୁକୁ ଦୃଷ୍ଟିରେ ରଖି ଏ ପୁସ୍ତକକୁ ଦୁଇଟି ପର୍ଯ୍ୟାୟରେ ବିଭକ୍ତ କରାଯାଇଛି । ୧୯୪୨ ରୁ ୧୯୬୭ ମଧ୍ୟରେ ଲିଖିତ କବିତା ଗୁଡିକ ପ୍ରଥମ ପର୍ଯ୍ୟାୟ – "ପୂର୍ବାର୍ଦ୍ଧ" ଓ ୧୯୬୮ରୁ ଲିଖିତ ଅବଶିଷ୍ଟ କବିତାକୁ ଦ୍ୱିତୀୟ ପର୍ଯ୍ୟାୟ 'ଉତ୍ତରାର୍ଦ୍ଧ'ରେ ଅନ୍ତର୍ଭୁକ୍ତ କରାଯାଇଛି । ପାଠକ ପାଠିକାମାନଙ୍କ ସୁବିଧା ଦୃଷ୍ଟିରୁ ଲେଖକମାନଙ୍କ ସଂକ୍ଷିପ୍ତ ପରିଚୟ ପରିଶିଷ୍ଟରେ ସନ୍ନିହିତ । ଏ ପୁସ୍ତକର କତିପୟ ଲେଖକ ବହୁ ବର୍ଷ ହେଲା ସ୍ଥାନାନ୍ତରିତ ହୋଇ ଅନ୍ୟତ୍ର ଚାଲି ଯାଇଛନ୍ତି । ତେଣୁ ସେମାନଙ୍କ ପରିଚୟ ଦେବା ସମ୍ଭବପର ହେଲା ନାହିଁ ।

ସ୍ୱର୍ଗତ ଶିବ ନାରାୟଣ ଦେବଙ୍କ ବିରଚିତ 'ଯୁଗଳ ଭଗିନୀ' ଯାହା କି ୧୯୫୬ ମସିହାରେ ରଚିତ ହୋଇଥିଲା । ସାହିତ୍ୟିକ ମୂଲ୍ୟ ଦୃଷ୍ଟିରୁ 'ଯୁଗଳ ଭଗିନୀ' ଗୋଟିଏ ଅନୁପମ ରଚନା । ତେଣୁ ଏ ପୁସ୍ତକରେ ସଂଯୋଜିତ କରାଯାଇଛି ।

ଏଠାରେ ଉଲ୍ଲେଖ ଯୋଗ୍ୟ ଯେ ଶ୍ରୀ ଶିବ ନାରାୟଣ ଦେବ କବିବର ରାଧାନାଥ ରାୟଙ୍କ ସମସାମୟିକ ଥିଲେ । ସେ ୧୯୦୨ ଖ୍ରୀ: ଅ:ରେ ପ୍ରଥମ

୪ର ପାଇଁ ରଧାନାଥ ଗ୍ରନ୍ଥାବଳୀ (ଭୂମିକା ଲେଖି) ପ୍ରକାଶନ କରିଥିଲେ ।

ପୁନଶ୍ଚ ରାଜା ବ୍ରଜରାଜଙ୍କ ସମସାମୟିକ (୧୮୪୧ – ୧୯୦୭) ଅନ୍ୟ ଜଣେ କବି ଶୋଭଚନ୍ଦ୍ର ବାରିକଙ୍କ ଲଖିତ ରଧାଚଉତିଶା ତାଙ୍କ ପୌତ୍ରଙ୍କ ଠାରୁ ଆମର ହସ୍ତଗତ ହେଲ । ପ୍ରାଚୀନ ଶୈଳରେ ଲଖିତ ଏହି ଚଉତିଶାର କିୟଦଂଶ ଏହି ପୁସ୍ତକରେ ସଂଯୋଜିତ ହୋଇଛି ।

ଆମେ କବର ନିଜସ୍ୱରେ ହସ୍ତକ୍ଷେପ କରିବା ଅନୁଚତ ମନେ କବି ମୂଳ କୋଠା ଗୁଡକ ଅବିକୃତ ଭବରେ ସଂପାଦନ କରିଅଛୁଁ । ପୁସ୍ତକର କଳେବର ବୃଦ୍ଧି ଆଶଙ୍କା କରି ଅନେକ ଲେଖକଙ୍କ ଲେଖା ଏ ପୁସ୍ତକରେ ସ୍ଥାନ ଦେଇ ନ ପାରିବାରୁ ଆମେ ଦୁଃଖିତ ।

ଏହି ପୁସ୍ତକର ପାଣ୍ଡୁଲିପି ପ୍ରସ୍ତୁତିରେ ଲିପିକାର ଶ୍ରୀ ଯୋଗେଶ୍ୱର ଠାକୁର ଓ ଶ୍ରୀ ମୀନ କେତନ ବାରିକ ସହଯୋଗ କରି ଥିବାରୁ ଆମେ ତାଙ୍କୁ ଧନ୍ୟବାଦ ଅର୍ପଣ କରୁଛୁଁ ।

୧୮୮୩ ମସିହାରେ ରାଜା ବ୍ରଜରାଜ ସିଂହ ଦେବଙ୍କ ଦ୍ୱାରା ପ୍ରତିଷ୍ଠିତ ଖଡିଆଳ ସାହିତ୍ୟ ସମିତିର ପବତ୍ର ଶତବାର୍ଷିକୀ ସମାବେଶ ଶୁଭଅବସରରେ ଏହି "ଖଡିଆଳ କୁସୁମ ୩ୟଭାଗ ଗୀତି ସ୍ତବକ ଗୁଚ୍ଛ" ଈଶ୍ୱରଙ୍କ ଦୟାରୁ ପ୍ରକାଶିତ ହୋଇ ଥିବାରୁ ଆମେ ଆନନ୍ଦତ ।

ପରିଶେଷରେ ଖଡିଆଳ ଛାପାଖାନାର ପ୍ରୋପ୍ରାଇଟର ଶ୍ରୀ ଚନ୍ଦ୍ରଲାଲ ଦାସ ନିଜେ ପରିଶ୍ରମ କରି ଯଥା ସମୟରେ ଏହି ପୁସ୍ତକର ମୁଦ୍ରଣ କାର୍ଯ୍ୟ ସମାପନ କରିଥିବାରୁ ତାଙ୍କ ନିକଟରେ ଆମେ କୃତଜ୍ଞ ।

ତା ୧୬ । ୧୦ । ୮୩ — ବିନୀତ

ବିଜୟା ଦଶମୀ — ଶ୍ରୀ ନୀଳକଣ୍ଠଲହତ ସିଂହ ଦେଓ

ଖଡିଆଳ — ଶ୍ରୀ ଅଭୟ ଚରଣ ଚଲାନ

# ✸ ସୂଚୀପତ୍ର ✸

(ଉତ୍ତରାର୍ଦ୍ଧ)

# ଖଡିଆଳ-କୁସୁମ

ଗୀତି-ସଂଗ୍ରହ

ତୃତୀୟ ଭାଗ

( ପୂର୍ବାର୍ଦ୍ଧ )

# ସ୍ୱପନ ସାଥି

ଲେଖିକା- ଶ୍ରୀମତୀ ନଳିନୀ କୁମାରୀ (ଗୋଲାପ)

ଗଭୀର ବରଷା ଘୋର ଅନ୍ଧାର ରାତିରେ
ଧରାବକ୍ଷ କଂପିଉଠେ ମନ୍ଦ୍ର ନିର୍ଘୋଷରେ । ୧ ।

ଚଉଦିଗେ ଭରପୁର ଘୋର ଘନ ଘଟା
ତା ମଧ୍ୟେ ଚପଳା ବିଂଚେ ଆଲୋକର ଛଟା । ୨ ।

ଅଦୂରେ ଡାକଇ ଭେକ ଗମ୍ଭୀର ନିସ୍ୱନେ
ପ୍ରକୃତି ରାଣୀକି ଧରା କମ୍ପାଏ ନର୍ତ୍ତନେ । ୩ ।

ସୁପ୍ତ ସର୍ବେ ପୁରବାସୀ ଗଭୀର ନିଦ୍ରାରେ
ଜାଗିରହେ ଆଜ କେହି ପ୍ରେମିକ ବାହାରେ । ୪ ।

ଦୁରୁଗମ ଘୋର ଏହି ନିଶୀଥ ଗଭୀରେ
ସ୍ୱପନ ସାଥିଙ୍କୁ ଦେଖେ ସ୍ୱପନ ବିଭୋରେ । ୫ ।

ବହୁ ଦୂରୁ ଆସି ବନ୍ଧୁ ବସି ମୋ ପାଶରେ
କହିଲେ ସେନେହ ଶିକ୍ତ ମଧୁର ଭଷାରେ । ୬ ।

"କେତେ ଦିନୁ ସଖି ! ତୋତେ ଦେଖିନାହିଁ ମୁହିଁ
ଏ ଦୀର୍ଘ ବିରହେ ମନ ହୁଏ ମମ ଦହି । ୭ ।

କଳାପନା କୁଞ୍ଜେ ରଖି ତୋର ପ୍ରତିଚ୍ଛବି
ଅହରହ ବଢାଏ ମୁଁ ଆକୁଳ ପୁରବ । ୮ ।

ଅତୀତ ସ୍ମୃତିକୁ ଗୁଞ୍ଜି ରଖି ମରମରେ
ଦିନରାତି କଟାଏ ମୁଁ ବ୍ୟଥା ନିରଶରେ । ୯ ।

କିପରି ତୋ ହୃଦ ହେଲା ଏତକି କଠିନ
କୋମଳ ହୃଦୟା ମୋତେ ଭୁଲିଲୁ କେସନ । ୧୦ ।

ସେନେହ ସୋହାଗ ଦାନେ କରି ମୋତେ ଧନୀ
ପାଶୋରିଲୁ କିପରି ଅୟି ! ଅଭିମାନିନୀ" । ୧୧ ।

ଶୁଣି ଏ ମିନତି ଭଗ କରୁଣ ବଚନ
ହୃଦେ ମୋର ଭରିଗଲା ବ୍ୟଥା ଯେ ଅସୀମ । ୧୨ ।

ଅତୀତର ସ୍ମୃତି ଆସି ନୟନ ପଲକେ
ଦେଖାଇଲା ପ୍ରତିବିମ୍ବ ମୁକୁର ଫଳକେ । ୧୩ ।

(କହଲି) "ଜୀବନେ ଭୁଲି ପାରେଁ କି ତବ ସ୍ନେହ ଋଣ
ଭଗ୍ନ ଭଗ୍ନ ଦଶୁ ପଛେ ସମାଜ ଦାରୁଣ । ୧୪ ।

ଅତୀବ କଠୋର ଏହି ନିଷ୍ଠୁର ସମାଜ
ଦେଖେନି ପ୍ରଣୟି ପ୍ରଣୟିନୀ ମନୋଗତ୍ୟ । ୧୫ ।

ତୁମେ ଥିଲ ବହୁ ଦୂରେ ମୁହିଁ ଥିଲି ଦୂରେ
ଏକତ୍ରିତ କରଇଲା କିଏ ଏ ମହିରେ । ୧୬ ।

ଭେଟା ଭେଟି ହେଲେ କିପାଁ ଦୁଇଦିନ ଲାଗି
ମାହାର ବ୍ୟଥା ରହିଲା ଚିର ଦିନ ଲାଗି । ୧୭ ।

ପ୍ରିୟତମ ଦେଲ ଯେତେ ଅଯାଚିତ ଦାନ
ମୋହଠାରୁ ପାଇଅଛ କେଉଁ ପ୍ରତିଦାନ ? । ୧୮ ।

କଲ ମୋତେ ଯେତେ ରୂପେ ସ୍ନେହ ଗୁଣେ ଋଣୀ
କିପରି ସୁଝିବ ତାହା ପାରୁ ନାହିଁ ଜାଣି । ୧୯ ।

ମନେ ପଡେ ଦିନେ ତୁମେ ଆସି ଲୁଚ ଲୁଚ
ଦେଇଥିଲ ମୋ ମୁଖରୁ ସ୍ୱେଦ ବିନ୍ଦୁ ପୋଛି । ୨୦ ।

ଅତୀତ ବିସ୍ମୃତ କେତେ କେତେ ସ୍ମୃତି ଗାଥା
ଯାହାର ସୁରଣେ ପ୍ରାଣେ ଲଗେ ଗୁରୁ ବ୍ୟଥା । ୨୧ ।

ଅନ୍ତରର ଅନ୍ଧକାରେ ଏଇ ଚବ ଦାନ
ଚର ଦିନ ଅଲୋକିବ ହୋଇଣ ଅକ୍ଷୁର୍ଣ୍ଣ" । ୨୨ ।

ଶୁଣି ଏ ବଚନ ମୋର ହୋଇଣ ହରଷ
ଧରିଲେ ମୋ କର ଆସି ଲଗିଲା ପରଶ । ୨୩ ।

ସାଦରେ ଆଲିଙ୍ଗି ମୋତେ ବସାଇଣ କୋଳେ
ଉଷ୍ଣ ଚୁମ୍ବନର ରେଖା ଆଙ୍କିଲେ କପୋଳେ । ୨୪ ।

ସିହରି ଉଠିଲି ମୁଁ ଏ କୁହୁକ ମନ୍ତ୍ରରେ
ଚମକ ଲଗିଲା ମୋର ଅନ୍ତରେ ଅନ୍ତରେ । ୨୫ ।

ପ୍ରିୟ କର ଧରି ମୁହିଁ ଆବେଗ ଅଧୀରେ
କହିଲି ମସ୍ତକ ରଖି ତାଙ୍କ ବକ୍ଷ ପରେ । ୨୬ ।

"ଅଯୋଗ୍ୟରେ ଦେଲ କିମ୍ପା ଏହି ଅଧିକାର
ଜଗତ କହିବ ନାହିଁ ମୋର ଅଧିକାର । ୨୭ ।

କେତେ ହେଲେ ଇଚ୍ଛି ନାହିଁ ମୁହିଁ ଅଭିସାର
ନୟନ ଦେଖା ମାତ୍ରକ ଆନନ୍ଦ ମୋହର" । ୨୮ ।

ଗଭୀର ନିଦ୍ରା ଅଳସ ପରେ ସ୍ୱପ୍ନ ଭୁଲ
ଦେଖେ ମୁଁ ରହିଛି ଏକା ପର୍ଯ୍ୟଙ୍କରେ ଖାଲି । ୨୯ ।

ପ୍ରିୟ ମୋର ବବାହିତ ସୁଦୂର ବଦେଶୀ
ମୋ କଥା କି ଭବୁଥିବେ ଏତେ ଦୂରେ ବସି । ୩୦ ।

ସ୍ୱପ୍ନ କି ଆସିବ ବାସ୍ତବ ରୂପ ଧରି
ଆଶା ଏକା ଦଏ ଢାଳ ଆଶ୍ୱାସନା-ବାରି । ୩୧ ।

ଆଉ ମୁଁ ସେଇ ଆଶରେ ଗଭୀର ନିଶାରେ
କଳପନା ପୁରି ରଚେ ଜୀବନ୍ତ ଉଷାରେ । ୩୨ ।
ବଂଧୁ ଦର୍ଶନ କାମନା ମୋହନ ଆଶାରେ
ବଂଚ ରହିଛ ଦୁସ୍ତର ଏ ମରୁ ସଂସାରେ । ୩୩ ।

୧୯୪୭ ଅଧିବେଶନରେ ପଠିତ, ସ୍ୱତନ୍ତ୍ର ପୁରସ୍କାର ପ୍ରାପ୍ତ



## ମାତୃଭୂମି

ଲେଖକ-ବିକ୍ରମ ମୁଣ୍ଡ

ଯିବିନି ମୁଁ ଯିବନି ଛାଡ଼ ମୋର ଜନନୀ
ଆଶ୍ରାଯାର ଶ୍ରୀଚରଣ ତଳେ
ଅଭୟ ବରଦାୟୀ ଅଗମ୍ୟ ସୁଖଦାୟୀ
ନିତି ଯାର ଅଙ୍ଗେ ମୁହିଁ ଖେଳେ ।
ବାଳୁତ ଆଜିଯାଏ ଯାର ଦେଶେ ମୁଁ ଥାଏ
ଲଭିଣ ଅଶେଷ ଆଶିଷ
ଧନ ସଂପଦମାନ ଅରଜି କର୍ମ ଜ୍ଞାନ
ମନ ମୋର ଉଲ୍ଲାସ ହରଷ ।
ସୋହାଗ ଭେଗ ଭଗ୍ୟ ଅଲୌକିକ ସମ୍ଭୋଗ
ଭୋଗୁଛି ଜନନୀ ପ୍ରସାଦେ
ରହିଛି ମହାନନ୍ଦେ ମାତା ବାତ୍ସଲ୍ୟ ଛନ୍ଦେ
ମେଣ୍ଟାଇ ତୃଷା ପ୍ରେମ ନୀରଦେ ।

ବୁଲୁଛି ସୁଖେ ଏଥି ବନୋଦେ ନିତିପ୍ରତି
ବାଇ ବଜୟ ବୀର ବାଜଣା
ନିତି ମାଆର କୋଳେ ବସି ବଶ୍ରାମ ବେଳେ
ଖିଆଳେ ଖେଳେଁ ଖେଳ-ଖେଳନା ।
ସ୍ନେହମୟୀ ଜନନୀ ସୁର ନାଗଙ୍କମଣି
ନୀଳ ଶ୍ୟାମଳ ବେଶେ ବେଶା
ସଦା ନହ୍ଲଲୀ ପ୍ରାଣା ପବିତ୍ର ପାପ ଶୂନ୍ୟା
ରମ୍ୟ ପଲ୍ଲୀ ବେଷ୍ଟିତ ଦେଶା ।
କେମନ୍ତେ ଯିବ ଦୂରେ ବଦେଶେ ବହୁ ଦୂରେ
କାର ଚରଣ ଆଶ୍ରା କରି
ସେ ଦେଶ ସୁଷମାକି ବିଗଟ ବଚତ୍ର କି
ହେବ ଏ ଦେଶ ସଙ୍ଗେ ସରି ?
ହେବନି ହେବନି ତା ହେବ ନି ତାହା କଦା
ଯିବି ନି କେବେ ବିଦେଶକୁ
ମରିବ ପଛେ ଏଥି ଯିବ ଜୀବନ ବିତି
ଯିବିନି କେବେ ବଦେଶକୁ ।
ଏ ଦେଶ ଗିରିବନ ନଦ ନଦୀ କାନନ
ଶ୍ୟାମଳ ରଙ୍ଗେ ସୁଶୋଭିତ
ତରୁ ଲତା ସୁନ୍ଦର ନୂତନ କଳେବର
ଷଡ ସୁମନେ ମେଖଳିତ ।
ଧୌତ ଚରଣତଳ ନୀଳ ସାଗର ଜଳ
ତହିଁ ବହଇ ପ୍ରେମ-ବନ୍ଧ
ପ୍ରେମ ପୂତ-ପୟୋଦ ହରେ ମନୁ ବିଷାଦ
ଦେଇ ନୂତନ ବଳ ଉହାଦ ।

ଜନନୀ ଏଚି ଦେଶେ ଝର ଝର ଶବଦେ
ନିର୍ଝର ଝରଣାଟି ଝରଇ
ନେଳଅ ପାଣିଧାର ଆହାକି ସୁବମଳ
ମୁକୁତା ଚହିଁ କିବା ଗଢଇ ।
ଚା ଉଚ ଲଲାମରେ ନବ କୁଙ୍କୁମରାଗେ
ପାଟଳ ଦୀପ୍ତ ରବି ରଜଇ
ବାରୁଣୀ ଅଞ୍ଚଳରେ ଗୋଧୂଳି ଲଗନରେ
ଫଗୁଆ ମେଘ ଫଗୁ ବଞ୍ଚଇ ।
ଗନ୍ଧ ବେଗ ସମୀରେ ଦୋଳଇ ଧିରେ ଧିରେ
ସୁମନ କରି ଅନୁରଗ
ଖିଆଳ ବଶେ ଖେଳେ ନାଚି କି ତାଳେ ତାଳେ
ସୁମନ-ଚର-ଆଳୀବୃନ୍ଦ ।
ଜନନୀ କୋଳେ ଖେଳେ ନିଶି ଗଣି କତାଳେ
ତରଳ ତାର ହାରମୟୀ
ଉଚ ନୀଳ ଦୁକୂଳେ ପ୍ରଶାନ୍ତେ କି ଉଦାରେ
ଦିଶଇ ସର୍ବ ଶୋଭମୟୀ ।
ଯେବେ ଚନ୍ଦ୍ର ବଉସେ କି କମନୀୟ ଦିଶେ
ପ୍ରଶାନ୍ତ ଧବଳ ଚନ୍ଦ୍ରିକା
ଜର୍ଜ୍ଜର ମୋତିହାର ବିମ୍ବ କି ନିଶାକର
ଢାଳୁଅଛ ସୁଖ-କଣିକା ।
ଏସନ ମାତୃଭୂମି ପୁଣ୍ୟ ପବିତ୍ରଭୂମି
ସରଗାଦପି ଗରୀୟସୀ
କେଉଁ ସୁଇଭ କନ୍ୟା ଯାର ଜଗତେ ଧନ୍ୟା
ତ୍ରିପୁର ମଧ୍ୟେ ମହିୟସୀ ।

ତା ଶାନ୍ତ-ସୁଧା ବାରି ଯାରେ ମିଳ ପାଉଛ
ସେ ନର ବିଶ୍ୱେ ଭଗବାନ
ସେ ନର ମହାମନା ତାର ପାଦ ବନ୍ଦନା
କରନ୍ତ ବିଶ୍ୱ ଜ୍ଞାନୀ ଜନ ।
ତେଣୁ ମାତାକୁ ବନ୍ଦେ ସହସ୍ର ବାର ବନ୍ଦେ
ପୁଣି ବନ୍ଦେ ତା ଯୋଗ୍ୟ ପୁତ୍ରେ
ମାତା ପାଦ-ପଦ୍ମରେ ଚିତ୍ତ ମୋ ନିରନ୍ତରେ
ଥାଉ ଭକତି ଭର ନେତ୍ରେ ।

● ଖଡଆଳ ସାହିତ୍ୟ ସମିତିର ନବମ ଅଧିବେଶନ ତା ୨୬ । ୩ । ୪୮
ଦିନ ପଠିତ ଓ ଦ୍ୱିତୀୟ ସ୍ଥାନ ପାଇ ପୁରସ୍କୃତ ।

*

## ସ୍ୱପ୍ନ

ଲେଖକ – ଶ୍ରୀ ଜିହ୍ୱଡ ରାମ ପଟେଲ

ସୁନୀଳ ଗଗନେ ହୀରକ ତାରକା
ନୟନ ନିଅଇ ହରି
ଦୁନିଆ ପୀଠରେ ଚିନ୍ତା ଶକତି
ପ୍ରାଣରେ ଦେଇଛି ଭରି । ୧ ।
ଆକାଶେ ଅନାଇ ଉନ୍ମତ ଆହ୍ଲାଦେ
ପିଏଁ ସୁଧାରସ ଖେଳେ
ଏଣେ ନିଦ୍ରାଦେବୀ ମନ ବିନୋଦନେ
ଆଶ୍ରୟ ଦିଅନ୍ତ କୋଳେ । ୨ ।

ଉଷା ଦରଶନେ ମନ ଚିତ୍ତ ମୋର
ଉଡଯାଏ ଛାଡ ଦେହ
ଯାଇ ବସା କରେ ଚଉର ଶିଖରେ
ଦେଖଇ ଦୁନିଆ ମୋହ ।୩।

ବ୍ରିଟିସ ଶାସନ ତାପେ ଖଡଆଳ
ଥିଲା ଦଳି ମଳ ହୋଇ
ବୀର ଉନ୍ମାଦରେ ବୀର ଯୁବାଗଣ
ଦେଲେ ମଳିନତା ଧୋଇ ।୪।

ମୁକ୍ତ ଖଡଆଳେ ମୁକ୍ତ ବାତବହେ
ମୁକ୍ତିରେ ପ୍ରାଣତା ହସେ
ବୀର ଯୁବାଗଣ ସେ ବାତ ସେବନେ
ମାତିଛନ୍ତ ନବ ରସେ ।୫।

କେଉଁ ସ୍ୱରଗୀୟ ଅଭ ବିତବିତ
ଧରଣୀ ରଣୀ ଗରଭେ
କାକ ପିକ ତାନ ମୟୁର ନର୍ତ୍ତନ
ରମଣୀୟେ ତଥି ଶୋଭେ ।୬।

ପାହାଡ ପର୍ବତ ଝର୍ଝରେ ଝରଇ
ନଦୀ ତୋୟ ଦାନେ ରତ
ଧାନେ ଦାନୀ ହୋଇ ଋଷୀକୁ ଯେ ନିଜ
କରିଛି ଆଜି ଉନ୍ନତ ।୭।

କଳ କାରଖାନା ଅସଂଖ୍ୟେ ଅସଂଖ୍ୟ
ପଇସା ଓଟାରି ଆଣେ
ସେଠୁ ଦେଶବାସୀ କୋଠାବାଡ ତୋଳ
ଧନ୍ୟ ନିଜକୁ ମଣେ ।୮।

କଟକ ଛଟକେ ନଜର ପଲକେ
ଦେଖେଁ ନବ ନବ ଦୃଶ୍ୟ
ନାରି ସମସ୍ତଙ୍କେ ପୁରୁଷ ରଜଇ
ହୃଦରେ ନ ଆସେ ହାସ୍ୟ । ୯ ।
ରାଜ ଦରବାରେ କବି ବିମଣ୍ଡିତ
ଯେ ଦେଶ ଚରଣ ମୂଳେ
ଚନ୍ଦ୍ର ଗୁପ୍ତଙ୍କର ସେ ନବରତନ
ଘରିନୁହେଁ ଯା'ଙ୍କ ତୁଳେ । ୧୦ ।
ଧରମ ପ୍ରଭବ ଚଅଳେ ଚହଟି
ପାପ ମାତ୍ରା କରେ କ୍ଷୟ
ଦୁନିଆ ପୀଠରେ ଉଚ୍ଚସ୍ୱରେ ଶୁଭେ
ଭରତ ମାତାର ଜୟ । ୧୧ ।
ଦେଶ ଜୟ ନାଦେ ନିଦରୁ ମୋ ଭଙ୍ଗେ
ଭବନା ପାଠକେ ସାର
ପରିବରତନ ନୁହଁଇ ନୂତନ
ଏ ସବୁ ପାଣିର ଗାର । ୧୨ ।
ଜ୍ୱଳନ୍ତ ସ୍ୱପନ ପ୍ରଭୁନୁହେଁ ମୋର
ଜ୍ଞାନ ଗୁରୁ ଭଲେ ଜଣେ
ସ୍ୱପନ ନୁହେଁ ସେ ଅଳୀକ ଦେବତା
ନେତା ରୂପେ ତାକୁ ମଣେ । ୧୩ ।
ଆସ ବୀର ଆସ ନେତା ଛତ୍ରତଳେ
କରିବୁଁ କର୍ମ ଆବୋରି
ସଫଳ ପ୍ରାପତେ ସ୍ୱପନ ଫଳତେ
ତ୍ୟାଗିବୁ ଜୀବନ ତରୀ । ୧୪ ।

ସ୍ୱପନ ଅମରୀ କରମେ ବ୍ରତତୀ
ହେଲେ ଏଇ ପୋଡା ପ୍ରାଣ
ସୁନାମେ ଅମର ସ୍ୱପନ ଭ୍ରମର
କରିବ ନିତି ଭଣାଣ । ୧୫ ।
ହେ ଆଶେ ଗାଅ ହେ ସ୍ୱାଧୀନ ସନ୍ତାନ
ଭରତ ମାତାର ଜୟ
ସ୍ୱପନକୁ ଆମ କର୍ତ୍ତବ୍ୟ ଜାଣିଣ
ବିଭୁ ପାଦେ ରଖ ଲୟ । ୧୬ ।

* ଖଡଆଳ ସାହିତ୍ୟ ସମିତିର ତା ୨୭ । ୮ ।୪୭ ଅଧିବେଶନରେ ପଠିତ

*

## ମାତୃଭୂମି

ଲେଖକ – ଶ୍ରୀ ଦାମୋଦର ମହାପାତ୍ର

ମାଆ ମାଆ ବୋଲି ଡାକିଅଛୁ କେତେ
ଖୋଜିଅଛି ଗିରିବନ
ମାତୃ ପଦଧୂଳି ପାଇବା ଆଶାରେ
ସହିଛୁ କେତେ କଷଣ । ୧ ।
ଯହିଁ ଯାଏ ତହିଁ ମାତୃ ନାମ ଗୋଟି
ସବୁରି ମୁଖରୁ ଶୁଭେ
ମା ନାମରେ ସତେ କି ମଧୁର ଅଛି
ଜାଣିଛନ୍ତ କିବା ସର୍ବେ । ୨ ।

ସ୍ୱ ଦେଶେ ବିଦେଶେ  ଗ୍ରାମେ ପୁରେ ପୁରେ
ବୁଲି ଦେଖିଛି ଅନେକ
ମୂରୁଖ ପଣ୍ଡିତ  ଧନୀ ମାନୀ ଜ୍ଞାନୀ
ଦୁଃଖୀରଙ୍କି ଅବବେକ ।୩।
ଯେଝା ସ୍ୱାର୍ଥେ ସିନା  ଲଗିଛନ୍ତି ସର୍ବେ
ଥାଏ କିନ୍ତୁ ଏକଲକ୍ଷ୍ୟ
ସେ ଲକ୍ଷ୍ୟ ସାଧନେ  ସେ ପଦ ବନ୍ଦନେ
ପାଆନ୍ତି ସୁଖ ପ୍ରତ୍ୟକ୍ଷ ।୪।
ନ ଥାଉ ପଛକେ  ମନ ବିନୋଦିଆ
ତରୁଲତା କୁଞ୍ଜବନ
କୋକିଳ କାକଳି  ମଧୁର ମଳୟ
ଖାଦ୍ୟପେୟ ଧନମାନ ।୫।
ରୋଗ ବ୍ୟାଧି ସଦା  ଘୋଟି ରହିଥାଉ
ରୁକ୍ଷ ଅନୁର୍ବର ବୋଲି
ଜଣେ କେହି ହେଲେ  ନ ଯାନ୍ତୁ ପଛକେ
ଅପନ୍ତର ବାଟ ଭଳି ।୬।
ସେ ଦେଶର ଯଦ  ନିନ୍ଦା କରେ କେହି
ନ ସହେ ହୃଦ କାହିଁକି
ଏହାଠାରୁ ବଳି  ସୁଖଦ ଗଉଦ
ଅଛି ବୋଲି କେ ଯାଏ କି ? ।୭।
ସେ ପାଣି ପବନେ  ଗଢା ଯାର ଦେହ
ବାଲ୍ୟ କାଳ ବିତିଅଛି
ଦୂର ଦେଶ ଯାଇ  ସୁଖେ ରହିଲେ ହେଁ
ପାରେକି କେବେ ମୁରୁଛି ? ।୮।

ସାହାର ଏଣିକି ମୋ ଆଦି ଯେତେ ଅଛ
ଅନ୍ୟ ପକ୍ଷେ ଯାହା ଘୃଣ୍ୟ
ସେ ଦେଶବାସୀଙ୍କ ପକ୍ଷେ ସ୍ୱର୍ଗସମ
ଯେଣୁ କହିଛନ୍ତି ଜନ୍ମ । ୯ ।

× × × ×

ସାତଟି ଦ୍ୱୀପରେ ଜମ୍ବୁ ଦ୍ୱୀପ ସାର
ଜମ୍ବୁ ଦ୍ୱୀପେ ଏ ଭରତ
ଯହିଁ ହିମାଳୟ ଭରତ ମସ୍ତକ
ରୂପେ ସଦା ବିରାଜିତ । ୧୦ ।
ଗଙ୍ଗା ଗୋଦାବରୀ କଟୀ ସୂତ୍ର ପରି
ଶୋଭେ ଯାର ରତ୍ନ ଦେହେ
ସୁଜଳା ସୁଫଳା ଶସ୍ୟ ଶ୍ୟାମଳା
ସ୍ୱର୍ଣ୍ଣମୟୀ ମନ ମୋହେ । ୧୧ ।
ସାଗର ବସନା ସଦା ହାସ୍ୟମୟୀ
ରୂପ ଗୁଣେ ମନୋରମା
ପୁତ୍ର ଗରବିଣୀ ସର୍ବ ଧର୍ମେ ରଣ
ଜଗତେ ନାହିଁ ଉପମା । ୧୨ ।
ଶ୍ରୀକୃଷ୍ଣ ଚୈତନ୍ୟ ଶଙ୍କର ଚୈତନ୍ୟ
ଗାନ୍ଧୀ ଆଦି ପୁତ୍ର ଜନ୍ମି
ସୀତା ଦମୟନ୍ତୀ ଲୀଳାବତୀ ଗାର୍ଗୀ
ପଦ୍ମିନୀ ବିଜୟ ଲକ୍ଷ୍ମୀ । ୧୩ ।
କବିଛନ୍ତି ଯାର କୋଳ ବିମଣ୍ଡିତ
ସେ କି ନୁହେଁ ଭାଗ୍ୟବତୀ

ବିଶେଷରେ ତାର ମଙ୍ଗଳ ବଢ଼ାଏ
ଶତଗୁଣେ ତାର ଖ୍ୟାତି । ୧୪ ।

ଏହିପରି ବିଶ୍ୱ – ବନ୍ଦନୀୟା ମାତୃ –
କୋଳେ ଜନ୍ମ ଲଭେ ଯେହୁ
ତାପରି ସୌଭାଗ୍ୟ ଅଛି କା ଜଗତେ
କୋଟି ଜନ୍ମଫଳ ସେହୁ । ୧୫ ।

ଭାରତ ଅଙ୍କରେ ଲାଳିତା ପାଳିତା
ମାତୃଭୂମି ମୋ ଉତ୍କଳ
ମୋ ମାତାର ଶିରି କେହି ନ ଦେଖନ୍ତ
ସରବେ ହୁଅନ୍ତ କାଳ । ୧୬ ।

ଗ୍ରାସିବାକୁ ସତେ ଚାକି ରହିଛନ୍ତ
ଗରୀବ ଦୁର୍ବଳ ବୋଲି
ଏ ଦେଶ ରକ୍ଷକ ସ୍ୱୟଂ ଜଗନ୍ନାଥ
ସବୁ ଦିଅନ୍ତ ସମ୍ଭାଳି । ୧୭ ।

ସାରା ଭାରତରେ ନାହିଁ କି ନ ଥିଲା
ଏ ଉତ୍କଳ ସମଭୂମି
କୋଣାରକ ପୁରୀ ଭୁବନେଶ୍ୱର
ଦେଖି ମୁଣ୍ଡ ଯାଏ ଭ୍ରମି । ୧୮ ।

ଅଂଶୁପା ଚିଲିକା ବ୍ରାହ୍ମଣୀ ମହାନଦୀ
ଗୋନାସିକା ମେଘାସନ
ଶିଳ୍ପ ବାଣିଜ୍ୟରେ ଅବା ଧର୍ମ ସତ୍ତ୍ୱେ
ଶ୍ରେଷ୍ଠ ଜଗନ୍ନାଥ ଧାମ । ୧୯ ।

ଏ ଦେଶ ମାଟିରେ ଗଢ଼ା ମୋର ଦେହ
ଏହିଠାରେ ମୋ ଜନମ

ଏହିଠାରେ ବାଲ୍ୟ                    ଯୌବନ କଟିଲା
ହୋଇବ ପୁଣି ମରଣ । ୨୦ ।
ମାଆ ଧରେ ଯିନା                    ଗର୍ଭେ ଦଶମାସ
ସ୍ତନ୍ୟ ଦେଇ କରେ ପୁଷ୍ଟି
ମାଟିର ଏ ମାତା                    ଜୀବ ଥିବାଯାଏ
ଧରି କୋଳେ ଲଭେ ତୁଷ୍ଟି । ୨୧ ।
ମରିଗଲା ବାସି                    ମା ନିଜ ହାତେ
ଫିଙ୍ଗି ଦିଏ ଦୂରେ ନେଇ
ସେ କାଳେ ଏ ମାଟି                    ଆଦରେ ନେଇଣ
ରଖେ ବକ୍ଷେ ସ୍ଥାନ ଦେଇ । ୨୨ ।
ଜନନୀ ଜନମ                    ଭୂଇଁ-ସ୍ୱର୍ଗଠାରୁ
ବଡ଼ ଅଟେ ବୋଲି ଖ୍ୟାତ
କିନ୍ତୁ ଜନନୀକୁଁ                    ବଳି ଜନ୍ମଭୂଇଁ
ହୃଦେ ବହେ ଅବରତ । ୨୩ ।
ଏଣୁ ମା ଆଶିଷ                    ଉତ୍କଳ ଜନନୀ
ଶିଖାଅ ମହତ ଶିକ୍ଷା
ପ୍ରାଣ ଭରି ଉଠୁ                    ମାତାର ଗୌରବେ
କରୁଛି ଏତିକି ଭିକ୍ଷା । ୨୪ ।

* ଖଡ଼ିଆଳ ସାହିତ୍ୟ ସମିତିର ନବମ ଅଧିବେଶନ ତା ୨୬ । ୩ । ୪୮ରେ ପଠିତ ଓ ପ୍ରଥମ ସ୍ଥାନ ପାଇ ପୁରସ୍କୃତ ।

# ସ୍ୱପ୍ନ

ଲେଖକ - ସ୍ୱର୍ଗତ ମନୋହର ମେହେର

ରାଗ – କଳହଂସ କେଦାର

ମଙ୍ଗଳମୟ ପ୍ରଭୁ ହେ ଭଗବାନ,
ମଙ୍ଗଳମୟ କଲ ମାନବ ତନୁ
ସକଳ ଜୀବୁଁ ଏଣୁ ମାନବ ଶ୍ରେଷ୍ଠ,
ସୁଜ୍ଞାନ ଦୟାବାନ ବୁଦ୍ଧି ବଳିଷ୍ଠ ।
ଏଥିକି ଶକ୍ତି ଦାତା ପରମ ପ୍ରଭୁ,
ମାନବ ଘଟେ ପଞ୍ଚ ରଖିଛ ସବୁ ।
ଯେ ଷଡ ଅରି ଦୟା କ୍ଷମା ସକଳ,
ଏକତ୍ରେ ମିଳି ଲୀଳା କରେ ମଞ୍ଜୁଳ ।
ଯା ତତ୍ତ୍ୱ ଯହିଁ ବୋଧ ବୁଝ କୋବିଦ,
ମନ ସନ୍ତୋଷେ ପୂର୍ଣ୍ଣ ପଡଇ ନିଦ ।
ବେନି ଲକ୍ଷଣ ବେନି ମୂର୍ତ୍ତି ବିବେକ,
ଦେଖି ବୁଝଇ ଜ୍ଞାନ ଶାସ୍ତ୍ରାଦ ଯାକ ।
ସ୍ଥୂଳକୁ ତେଜ ସୂକ୍ଷ୍ମେ ଜୀବ ବିହାର,
କରି ଦେଖଇ ସ୍ୱପ୍ନେ କେତେ ପ୍ରକାର ।
ନାନାଦି ବାଦ୍ୟୋତ୍ସବ ନୃତ୍ୟ ସଙ୍ଗୀତ,
କାନନ ତରୁଲତା କୁସୁମ ଯୁକ୍ତ
ଦେଉଳ ମଣ୍ଡପାଦି ବେଶ ଭୂଷଣେ,
ଗଜ ତୁରଙ୍ଗ ରଥ ରତ୍ନବସନ ।
ତୀର୍ଥ ଗମି ନାନା ତୀର୍ଥ ଗମନ,
ଗୋବ୍ରାହ୍ମଣ ବୈଷ୍ଣବ ଶିବ ଦର୍ଶନ ।

ସୁମିଷ୍ଟ ଦ୍ରବ୍ୟ ଭୁଞ୍ଜ ପରମ ତୋଷ,
ଲଭି ସୁଦିବ୍ୟାଙ୍ଗନେ ପ୍ରେମରେ ବଶ ।
ମାନବ ଜନ୍ମ ସ୍ୱାର୍ଥ ଅଟଇ ନେତ୍ର,
ଦେଖି ଦେଖାଉ ସ୍ୱପ୍ନ କରୁ ପବିତ୍ର ।
ଆଜନ୍ମ ଦେଖାନାହିଁ ତା କରୁ ଦୃଶ୍ୟ,
ଧନ୍ୟବୋଲବା ତୋତେ ସ୍ୱପ୍ନପୁରୁଷ ।
ଶୟନେ ନିଦ୍ରାକାଳେ ତୋ ଆଗମନ
ଜାଗ୍ରତ ଥିଲେ ଦେଖା ନ ଦେଉ ସ୍ୱପ୍ନ ।
ପ୍ରତ୍ୟକ୍ଷ ଦେଖି ହର୍ଷ ବିଷାଦ ମନ,
ଈକ୍ଷଣେ ଭୁକ୍ତି ଶେଷେ ଦଶଇ ବ୍ୟୋମ
ଦେଖିଲି ମନରଜା ସବୁ ଅନ୍ତର,
ଭ୍ରମି ଭ୍ରମାଉ ସ୍ୱପ୍ନ ଜନେ ସୁନ୍ଦର ।

ଖଡଆଳ ସାହିତ୍ୟ ସମିତିର ତା ୨୮ । ୮ ।୧୯୪୬ଅଧିବେଶନରେ ପଠିତ ।



## ପରିବର୍ତ୍ତନଶୀଳ ଜଗତ୍

ଲେଖକ- ଶ୍ରୀ ପ୍ରୟାଗ ଦତ୍ତପୋଷି

ପରିବର୍ତ୍ତନଶୀଳ ଜଗତ୍
ରଥରଚକ ତେଲୀର ବଳଦପରି
ଘୁରେ ଅବିରତ ।
ସେହି ଧରିତ୍ରୀ ପୃଥ୍ୱୀ
ଘୁରେ ଯଥାପଥ
ନୁହେଁ ଇତସ୍ତତ । ୦ ।

ବର୍ଷ ଚକ୍ର ଘୁରେ
ସଂଜ ସକାଳେ ଦିନଘୁରେ
ଗ୍ରୀଷ୍ମ ବର୍ଷା ଶରତ୍ ଶିଶିର
ହେମନ୍ତ ବସନ୍ତ ସରେ
ବର୍ଷ ଚକ୍ର ଘୁରେ । ୧ ।

ଜନ୍ମ ଚକ୍ର ଘୁରେ
ଅବ୍ୟକ୍ତିର ପରେ
ବ୍ୟକ୍ତ ଭବଠାରେ
ବାଲ୍ୟଯୁବାସ୍ଥବିର ରୂପେ
ଜୀବନ କାଳ ସରେ
ଅବ୍ୟକ୍ତର ପରେ
ଜନ୍ମ ଚକ୍ର ଘୁରେ । ୨ ।

ମାୟାର ଚକ୍ର ଘୁରେ
ମହତ୍ତତ୍ତ୍ୱ ଶୂନ୍ୟ ଭବ ଘରେ
ବାୟୁ ତେଜ ଅପ ଭୂ ରୂପଧରେ
ପ୍ରଳୟର ତରେ
ସ୍ଥୂଳ ଜଗତ ସରେ
ମହତ୍ତତ୍ତ୍ୱଠାରେ
ମାୟାର ଚକ୍ର ଘୁରେ । ୩

ଜ୍ଞାନ ନେତ୍ରେ ଦୃଷ୍ଟ
ମାୟାର ସବୁ ସୃଷ୍ଟ
ବିବେକର ଇଷ୍ଟ
ସବୁ ଭ୍ରାନ୍ତ ଅସତ୍

ପରିବର୍ତ୍ତନଶୀଳ ଜଗତ୍
ଏକା ବ୍ରହ୍ମ ସତ୍
ସେଇ କୂଟସ୍ଥିତ
ସେଇ ଧ୍ରୁବ ସତ୍ୟ । ୪ ।



# ପ୍ରଦୀପ

ଲେଖକ – ଅଚ୍ୟୁତାନନ୍ଦ ପଣ୍ଡା

ଅଦିନ ଏ ସନ୍ଧ୍ୟାର [illegible]ଲେ ଝଞ୍ଜାର ଶତ ଛାୟାବାଜି
ଉଆଁସୀ ଏ ଅନ୍ଧାର କୂଟଳ, ପ୍ରଦୀପ ମୋ ଥିବ ଆଖି ମୁନ୍ଦ ।
ଝଡର ନେପଥ୍ୟେ ବାଜେ ସମାପନ-ବୋଧନର ବେଣୁ
ମୃତ୍ୟୁର ତାଣ୍ଡବ ତାଳି ଚଫନାର୍ୟିତ ତମସାର ଜୋଣ୍ଣୁ ।
ନଦାୟ ଉନ୍ମୁଖ ସଖା ଦୀପାନ୍ୱିନ ଅବସାନ ଶିଖା
ଇତିହାସ ଇତିବୃତ୍ତି ତାର ଅତୀତର ଅନୁତାପ ଲେଖା ।
ଗାଇବାକୁ ନାହିଁ କିଛି ଗାନ ଦେବାପାଇଁ ନାହିଁ କିଛି ଦାନ
ଫାଙ୍କା ଖାଲି ସବୁଠଧୋକାବାଜି ଅତୀତଟା ଶତ ହୀନିମାନ ।
ପ୍ରଦୀପ ମୋ ଅମୁକୁଳା କଳ ଧୂଳିତଳେ ଝରିପଡେ ଛିଡ
ଉଷରର ବାଲି ପଇସରେ ପ୍ରାଥମିକ ଝର ଯଥା ପଢ ।
ଶିଖା ବୁକେ ଧକ୍କାରଦାଗ ତୋଫାନର ଫୁତ୍କୃତି-ତୋଳା
କାହିଁକି ଏ ଧ୍ୱଂସର ରସ ଅଭିଶାପ ଅବସାନ ଖେଳା ।

ତୁମରି ସରସ-ଶତ-ସ୍ୱାଗତିକା ସୁନ୍ଦର ସୁରେ
ଦିନେ ଯେ ଜଳିଲି ଦୀପ ଅନ୍ଧାର ନିଭୃତ ପୁରେ ।

ଆଗମନ ରଙ୍ଗିଣୀ ହେ ଦେଲ ଶିଖାତଳେ ପ୍ରୀତି ଲୁଚକାଳି
ନୂତନତା-ଉଲ୍ଲାସ ସୁର ମାତାଲେ ତ ଜଳିଲି ଫୁଲି ।

କିନ୍ତୁ ସତେ ସେହି ସୁର ସଖା ଧ୍ୱଂସର ଉତ୍ତଳା ତାଳେ
ମଉଳା ଏ ପ୍ରଦୀପର ରେଖା ସଙ୍କେତେ ଆଜ ଛାଡି ଥରେ ।

ହଂସ ଯଥା ମାନସର ଯାତ୍ରୀ ପ୍ରଦୀପ ମୋ ପଳାୟନ ପନ୍ଥୀ
ଅନନ୍ତ ବର୍ତ୍ତିତାର ଲିପ୍ସା ଛିନ୍ନ ତା ବନ୍ଧନ ଗ୍ରନ୍ଥି ।

କାଳସିନ୍ଧୁ ଅମା ଅନ୍ଧକାରେ ଛନ୍ଦହୀନେ ଆଜ ଯିବ ଛାଡି
ଝଙ୍କାର ଉଦ୍‌ବେଳ ତଳେ ମିଶିବ ଅନାୟାସେ ଭଳି ।

ଲୁଭଟିବ ନାହିଁ କେବେ ନିଅ ଆଉ ଥରେ ଛାତି ତଳେ ତୋଳି
ଯେଉଁ ଆଡ଼ି ନିରଞ୍ଜନା ତାର ଜୀବନରେ ନ ପାରିଛି କରି ।

ନିର୍ବାଣ-ପ୍ରେରଣାର ତଳେ ପ୍ରଦୀପର ରକ୍ତାଭ-ରେଖା
ଜୀବନର ଅବଶୋଷ ପୋଛି ବୁକେ ତୁମ ଲିଭିବ [illegible] ।



# ଋତୁରାଜ

ଲେଖିକା-ଶ୍ରୀମତୀ ପ୍ରବୋଧିନୀ ବେହେରା

ସ୍ୱର - ଝୋଳି

ଆହେ ପ୍ରଭୁ ଭଗବାନ ତୁମରି କରୁଣା ଦାନ
ତୁମରି ପ୍ରଶଂସା ହେଉ ଏହି ଦିବସେ
ଦେବ ଗଣଙ୍କ ଅଗ୍ରତେ ତୁମ୍ଭ ପୂଜା ହୁଏ ନିତ୍ୟେ
ସର୍ବ ଶାସ୍ତ୍ରେ ଅଟ ତୁମ୍ଭେ ବିଦ୍ୟା ଭଣ୍ଡାର
ବସନ୍ତ ଉପଲକ୍ଷେ ମନ
ଲେଖିବାକୁ ବଳାଉଛି ହୁଅ ପ୍ରସନ୍ନ । ୧ ।

ବର୍ଷକରେ ବାରମାସ ଛଅ ଋତୁରେ ବିଖ୍ୟାତ
ଗ୍ରୀଷ୍ମ, ବର୍ଷା, ଶରତ, ହେମନ୍ତ, ଶିଶିର
ଋତୁରାଜ ବା ବସନ୍ତ ଶିଶିର ଅନ୍ତେ ସନ୍ତୁଷ୍ଟ
ପ୍ରବେଶଇ ଧରାଧାମେ ଆନନ୍ଦ ମନେ
ସେ ସମୟେ ସୌନ୍ଦର ମହୀ
ପ୍ରାଣୀ ଆନନ୍ଦର ମତ ନୁହଇ କହି । ୨ ।

ବହେ ଦକ୍ଷିଣ ପବନ ସୁବାସିତେ ପରିପୂର୍ଣ୍ଣ
ଜନମନ ମନୋରମ ହୁଏ ଆଘ୍ରାଣେ
ଦ୍ରୁମ ଲତାଏ କୁସୁମେ ମଣ୍ଡିତ ଦିଶଇ ବନେ
ପଦ୍ମଫୁଲ ସରେବରେ କି ଶୋଭାପାଏ
ତଥି ପରେ ସୂର୍ଯ୍ୟ କିରଣ
ବାଜିଣ ସୁବର୍ଣ୍ଣ ପରିଦିଶେ ଶୋଭନ । ୩ ।

ଏ ଫୁଲେ ସେ ଫୁଲେ ବୁଲି ଚୁମ୍ବଇ ଆନନ୍ଦେ ଅଳି
ହର୍ଷ ମନେ ଗାଉଥାଏ ବସନ୍ତ କେଳି
ଗହଳ ଆମ୍ବ ଡାଳରେ ଗଇବ ପିକ ସୁସ୍ୱରେ
ଗାଇଣ ଋତୁରାଜଙ୍କ ମଧୁର ଗୀତି
ସେହି ରବ ଶୁଣି କର୍ଣ୍ଣରେ
ସ୍ଥିର ହୋଇଣ ଭ୍ରମର ରହି ନ ପାରେ । ୪ ।
ନବୀନ ପଲ୍ଲବମାନ ଧରିଛି ରସାଳ ଦ୍ରୁମ
ଶ୍ୟାମ ରକ୍ତ ବର୍ଣ୍ଣ ପିଣ୍ଡ ଦିଶେ ଶୋଭନ
ବସନ୍ତ ରାଜ ଆଜ୍ଞାରେ ସମୀର ବହଇ ଧୀରେ
ଛାଡ଼ ତାର ଭୈରବ ମୂରତି ସଦରେ
ବସନ୍ତ ଋତୁର କାରଣେ
ହରଷ ଚିତ୍ତେ ଖେଳନ୍ତି ବିହଙ୍ଗ ଗଣେ । ୫ ।
ବସନ୍ତେ ହୋଇଣ ପ୍ରୀତ ବନ ଜୀବ ଯୂଥ
ବୁଲନ୍ତି ଆନନ୍ଦ ମନେ ପବନ ମୁଖେ
ଋତୁରାଜରେ ଅଶୋକ ସର୍ବାଙ୍ଗ ମଣ୍ଡିତ ଦେଖି
କାମିନୀ ନିଆଳୀ ଯୂଥି ଟଗର ମଲ୍ଲୀ
ପ୍ରଜାପତି ତହିଁ ଉପରେ
କରନ୍ତି ସଙ୍ଗୀତ ଆହା ମଧୁର ସ୍ୱରେ । ୬ ।
ରଜନୀ ଦବସ ଉଷା ବସନ୍ତେ ହୋଇଣ ଭୂଷା
ବାଳକ ବାଳିକା ସର୍ବେ ମାତନ୍ତି ଖେଳେ
ଶିଶୁଗଣେ ସର୍ବେ ରତ ଉପବନରେ ସନ୍ତତ
ଫୁଲ ତୋଳି ପ୍ରଜାପତି ଧରି ବିଭୋଳେ
ଗୀତ ଗାଇ ଆନନ୍ଦ ଭରେ
ଧନ୍ୟ ଧନ୍ୟ ଋତୁରାଜ କାଳ ମଧ୍ୟରେ । ୭ ।



# ପ୍ରଭାତ ପଦ୍ମିନୀ

ଲେଖକ - ବିଶ୍ୱନାଥ ମିଶ୍ର

ରାଗ - ଶଙ୍କରାଭରଣ

ନିଶାଶେଷେ ପୂର୍ବ ଦିଗଙ୍ଗନା ପ୍ରଦୀପିତ
ଅଙ୍ଗେ ରକ୍ତାକ୍ତ ବସନେ ହୋଇ ବିଭୂଷିତ ।
ବିହଙ୍ଗ ରଚିଲେ ଗୀତ ।
କେଳପୁରୁ ଚଳ ଆଳି ଲଭି ଲଜ୍ୟା ବତ । ୧ ।
ଉପବନ ମନୋହର ହୋଇ କୁସୁମିତ
ମନ୍ଦ ଅନିଳେ ସୁଗନ୍ଧ ବହି ତୋଷେ ଚିତ୍ତ ।
କାକଳ କାଅ ଘୋଷିତ ।
ଦିବାକର ଆଗମନ ଶକୁନ ଭଷିତ । ୨ ।
ସରୋବର ପରିମଳ ସଲୀଳେ ଭୂଷିତ ।
ମୂଦ୍ରିତ ବଦନେ କୁମୁଦନୀ ବିରସିତ ।
ପଦ୍ମ ଚିତ୍ତ ବିଚଳିତ ।
ଭାନୁପଥ ଅନୁସରେ ଫୁଟିଣ ଇଷିତ । ୩ ।
ଉଦୟା ଚଳରେ ଦିବାକର ପ୍ରକାଶିତ
ବନ୍ଧୁ ସ୍ୱରରେ ସରସୀ ପଦ୍ମ ବିକଶିତ ।
ଆନନ୍ଦ ସ୍ରୋତେ ଭଷିତ ।
ଭେଟଇ ରମଣୀ ଯଥା ପତି ବିଦେଶିତ । ୪ ।
ପରାଗ କୁଙ୍କୁମ ବର୍ଣ୍ଣେ ହୋଇ ସୁରଞ୍ଜିତ
ରବ ଅନୁରାଗୀ ନେତ୍ରୁ ସୁବେଶ ରଞ୍ଜିତ ।

ଚନ୍ଦେ ନବୀନ ଭଙ୍ଗୀଚ ।
ବାୟୁ ଦୋହ୍ଳଟେ ଗାଏ ଯୁଗଳ ସଙ୍ଗୀତ । ୫ ।
ବେଳୁଁ ବେଳ ରବ ଝଞ୍ଜ ଉଠେ ବିଳସିଚ ।
କି ଭଳି ତା ସନ୍ଧ ଭାଳ ଶ୍ରୀମୁଖ ଛବିଚ ।
ପ୍ରଭଟେ କି ମାଧୁରୀଚ ।
ରହି ନ ପାରିବି ଏନେ ମନୁ ପାଶୋରିତ । ୬ ।
କଳକା ରୂପ ଯାଗରେ କେତେକ ଦିଶିତ ।
ପତର ସୁପାତୀ ଢାଳ ଗୃହ ପିପାସିତ ।
ଥିଲୁ ନୋହି ସୁବାସିଚ
ମଣ୍ଡନ ବଦନେ ଅବ୍ଭ କିସ ମନାସିତ । ୭ ।
ମନ୍ଦ ମନ୍ଦ ସମୀରଣ ବହି ସୁବାସିଚ
ତୋ ମାଧୁରୀ ମଧୁକର ହୃଦେ ଉଲ୍ଲାସିତ ।
ଗୁଣୁଗୁଣୁ ଗାଇ ଗୀତ ।
ଢଳଇ କି ରଙ୍ଗେ ଆହା ସଗରେ ଆସିତ । ୮ ।
ତୋ ବଂଶେ ଜନମି ବ୍ରହ୍ମା ଜଗତି ରଚତ
କମଳନୀ ଜନ୍ମି କୋଳେ ଅଖିଳ ଶାଶିତ ।
କରି ଅନ୍ନ ବିତରିତ ।
ଧନ୍ୟ ସରୋଜିନୀ ତୁଚ ଚର ପ୍ରଶଂଶିଚ । ୯ ।
ମଦା କାଳେ ବିଷ୍ଣୁ କରେ ହୋଇ ବିରାଜିତ
ଅଷ୍ଟାଦଶ ଚିହ୍ନେ ପୂଣ ହେଉଛୁ ଗଣିତ ।
ଭଗ୍ୟବତୀ ତୋ ପରିତ ।
ଆନ କୁସୁମ ତୋ ସଙ୍ଗେ ନୁହଇ ସରିତ । ୧୦ ।
ମଞ୍ଜୁଳ ଆନନେ ଧୀର ବିନୟ ଭୂଷିତ ।
ଆହା ଏ ତୋର ସୁରୂପୁ ସ୍ୱର୍ଗ ପିୟୂଷତ ।

ହେମ ମୁଖେ ଆଭୂଷିତ ।
ମୃଦୁ ମଧୁ ହାସେ କେହ୍ନୁ ନ ଥିବ ରହିତ ।୧୧।
ତୋର ଅନୁପମ ଛବି ପାଖେ ପ୍ରଦର୍ଶିତ ।
ଦେବ କି ନିଧି ରଖିଛି ଧଗ ପ୍ରକାଶିତ ।
ଢାଳିଥାଅ ଉଲ୍ଲାସିତ ।
ମନ ନେତ୍ର ତୋର ପ୍ରେମେ କରି ନିବେଶିତ ।୧୨।
ସରୋବରେ ଶୋଭା ଢାଳ ନୋହି ବରହିତ ।
ଥିବୁ ସଉରଭେ ଯେତେ କାଳ ବିକଶିତ ।
ରବ ରହୁଁଥା ବହିତ ।
ଅମୃତମୟ ଧ୍ୟାନେ ଦର୍ଶକ ତୋଷିତ ।୧୩।

✱ଖଡିଆଳ ସାହିତ୍ୟ ସମିତିର ତା: ୨୮-୧୧-୪୭ର ଅଧିବେଶନରେ ପଠିତ ।



## ବର୍ତ୍ତମାନ

– ହୃଷୀକେଶ ପଟ୍ଟନାୟକ

ଭୂତ ଭବିଷ୍ୟତ    ନିୟତି ନିୟତ
ଅଗ୍ରେ ଉଭା ବର୍ତ୍ତମାନ ।
ସନ୍ଦେହ ଭ୍ରାନ୍ତ ନର    କଠୋର କୁଠାର
ଯେଣୁ ସେ କାଳ ଅଧୀନ ।୨।
ଅତୀତ ତରଣୀ    ପାଇ ତା ସରଣୀ
ବାରିଧୀରେ ହେଲା ଲୀନ ।

ବର୍ତ୍ତମାନ ତରୀ ଭବାର୍ଣ୍ଣବେ ଘୁରି
କରେ ତା ପାଦ ପୂରଣ । ୨ ।
ହେଲା କଳୁଷିତ ଏ ପୁଣ୍ୟ ଭରତ
ଦେଖ ହେ ନୟନ ଖୋଲି ।
କି ଥିଲା ଏ ରାଜ୍ୟ କି ହୋଇଛି ଆଜ
ଧୂଳି ସଙ୍ଗେ ଗଲା ମିଳି । ୩ ।
'କୋଣାରକ' 'ତାଜ' ଦେଖୁଛନ୍ତି ଆଜ
ବିପର୍ଯ୍ୟୟ ଭରତର ।
ପୁରାଣ କୋରାନ ଭୁଲି ବେନି ଜନ
ପଥିକ ପାପ ପଥର । ୪ ।
(ମୂକ)ବାରବାଟୀ କହେ 'ଉତ୍କଳ ବୀର ହେ !
ଦେଖିଯାଅ ବାରେ ମୋତେ ।
କି ଥିଲି ପୂର୍ବେ କି ହୋଇଛି ଏବେ
ଲାଜ ନ ମାଡେ କି ସତେ ?' । ୫ ।
ସିକତା ପ୍ରାନ୍ତରେ ଭଗନ ଶରୀର
ଠିଆ ଭୁବନ ଈଶ୍ୱର ।
ଖସେ ସିଳାମାନ ଦେଖ ବର୍ତ୍ତମାନ
ଆହା କି ଦୁର୍ଗତି ତାର । ୬ ।
ନୀଳଗିରି ଶିରୀ କାଳ ନେଲା ହରି
ନ ହରି ଗୌରବ ବୀଣା
ଅଦ୍ୟାପି ଅମ୍ବରେ ସନ ସନ ସ୍ୱରେ
ବଜାଇ ଅହିଂସା ବୀଣା ।

ଭାରତ ଭାସ୍କର ମହାତ୍ମା ଶେଖର
ଧ୍ରୁବ ତାର ଧର୍ମ ବୀର ।
ଖସିଗଲା ଆଜି ଭାରତ ଅମ୍ବରୁଁ
ଛେଡ଼ି ପାର୍ଥିବ ଶରୀର । ୮ ।
ଆହେ ମହାଯଶା ତବ ସେ ଅହିଂସା
ଧରମ ଅଦ୍ୟାପି ଭବେ ।
ତୁମେ ବଳବନ, ହରେ ଜନମନ
ଗାନ୍ଧି ଭାରତୀୟ ଗର୍ବେ । ୯ ।

✱ ଦ୍ୱିତୀୟ ସ୍ଥାନ ପାଇ ପୁରସ୍କୃତ ।

-0-

## ରାଧା ଚଉତଶା

– ସ୍ୱର୍ଗତ ଶୋଭ ଚନ୍ଦ୍ର ବାରିକ

ରାଗ - କେଦାର କାମୋଦୀ

କହଇ ରାଧାପାଶେ ଦୂତୀକା ନାରୀ
କହି ପେଶିଲେ ମୋତେ କୁଞ୍ଜ ବିହାରୀ ଗୋ ।
କୃଶ କଟି ଗୋ ଶୁଣ ଏ ମୋର ଗିର
କୃଷ୍ଣ ପ୍ରେମିକା ତୁମ୍ଭ ଲେ ସମାଦର ଗୋ । ୧ ।
ଖର ବିଧୁ ବରନି ଉରଜ ତୋର
ଖରପ ହେବ ସଖୀ ଅଳ୍ପ ଦିନର ଗୋ ।
କ୍ଷିତିରେ କୀର୍ତ୍ତି ପ୍ରୀତି ଅଟଇ ସାର ଗୋ । ୨ ।

ଗିରିଜା ପତି ବର ଦେଲେକ ତୋତେ
ଗୋପାନେ ଲୀଳା କର କୃଷ୍ଣ ସଙ୍ଗତେ ଗୋ ।
ଗୋଳ ଦୀନ୍ତେ ଶକର କ୍ଷୀର ଯେମନ୍ତ
ଗୁଆଳ ମେଳେ କୃଷ୍ଣ ହୁଅ ତେମନ୍ତ ଗୋ (୩)

ଘନ୍ତ୍ରନାଥଙ୍କ ସୁତା ତୀରେ ଦନେକ
ଧାବି ହେଲେକ ଦେଖି ତୋ ଇନ୍ଦୁ ମୁଖ ଗୋ ।
ଘୁଣା ଶର ବିନ୍ଧଲା ଅପଘନେନ
ଘନ କେଶୀ ତୋ ବିନା ଦୁଃଖ ଖଣ୍ଡନ ଗୋ । ୪ ।

ଉଡୁପ ତୁହି ବୃନ୍ଦ ନଦୀରୁ ଚାର
ଉଡ ଲେଉଛି ମଳୟଜ ବାସର ଗୋ
ଉନ୍ନତ ବନ୍ଧେ ନାହିଁ ସବୁ ଦିନର
ଉତ୍ତମ ଭବେ ଗମା ବିଷ୍ଣର କର ଗୋ । ୫ ।

ଚତୁକ ରହି ବଶ୍ୟ ମାଧବ ହେଲେ
ଚନ୍ଦ୍ର ଶେଖର ବନ୍ଦେ ତୋ ବକ୍ଷ ସ୍ଥଳେ ଗୋ । ୬।

ଛନ୍ଦ ବରଷୁ ମନ କେତକି ବାସେ
ଛନ୍ଦପକ୍ଷୀ ବନାଶ ହେଲା ନିରଶେ ଗୋ
ଛବି କୁସୁମ ଶଶାଧର ରହୁଁ ଛି
ଛନ୍ନକେ ଫୁଲ୍ଲ ଚନ୍ଦ୍ର ରସ ପିଉଛି ଗୋ । ୭ ।

ଜବା ଅଧରୀ ହସି କହନ୍ତୁ ଗିର
ଯୋଗୀନ୍ଦ୍ର ଯୋଗ ଭଙ୍ଗ କାମ ଭଣ୍ଡାର ଗୋ
ଜପ ତପ ତୁ ମନ୍ତ୍ର ତୁ ମହୌଷଧ
ଜବେ କୃଷ୍ଣ ଦେହରୁ ଛଡାଅ ବ୍ୟାଧ ଗୋ । ୮ ।

ଝଳ ଗୋରୀ ତୁ ମୋର ଘେନ ବନତି
ଝସ ଉଣି ଦର୍ପରୁ ରଖ ଶ୍ରୀପତି ଗୋ
ଝଳ ନାଦ ତୋ ଗିର ପ୍ରାୟେ ମାଧୁରୀ
ଝୁରନ୍ତ କୃଷ୍ଣ ରହିଁ ତୋ ରୂପେ ଗୋରୀ ଗୋ । ୯ ।

ନୀରଜ ଠାରୁ ଅଙ୍ଗ ନିରଣ ହେବ
ନିଷ୍ଟେ ଜନ ମୁଖରେ ନିନ୍ଦା ପାଇବ ଗୋ
ନିଷ୍ଠୁର କୂର୍ମ ପୃଷ୍ଠ ପ୍ରାୟେ ତୋ ଛାତି
ନାରୀ ହୋଇ ତୁମ୍ଭର ଏହିକି ରୀତି ଗୋ । ୧୦ ।

ଟେକ ବରୁଣ ଦିଗେ ସପ୍ତ ଅରୁଣ
ଟଳିବ ନାହିଁ ମନ ହେଲେ ଉଦେଣ ଗୋ
ଟେକିଣ ମୁଖ କୃଷ୍ଣେ କହ ତୁ ଗିର
ଟଙ୍କଧର ରିପୁରୁ ତାଙ୍କୁ ଉଦ୍ଧର ଗୋ । ୧୧ ।

ଠାକୁରଣୀ ଶୁଣିଲେ ଦୂତୀକା ବାଣୀ
ଠକି ବୁଲୁଛ କିପାଁ ବାଉ ରମଣୀ ଗୋ
ଠିକେ ଉଠିଯା ପଲ ନ ଥାଅ ପାଶ
ଠକ କଥା ତୋ ଖଞ୍ଜୁ ପର ପୁରୁଷ ଗୋ । ୧୨ ।

ଡାଳିମ୍ବ ଦନ୍ତୀ ବୋଲେ ଢଣ୍ଢା ମୋର
ଡକା ପଡବ ହାଟ ଦାଣ୍ଡ ବଜାର ଗୋ
ଡରରେ ଉପନନ୍ଦ ନନ୍ଦେ କହିବେ
ଡେଙ୍ଗୁଆ ଦେଇ ମୋତେ ଗୋପୁଁ ତଡିବେ ଗୋ । ୧୩ ।

ଢଙ୍କୁଣୀ ନାରୀ ତୁରେ କାହିଁ ଅଇଲୁ
ଢାଳେ ଢଳିବ୍ରତାକୁ ପରେ ଖଞ୍ଜିଲୁ ରେ
ଢାଙ୍କୁଣୀ ଶକୁନୀରେ ପୁଣି ଢଙ୍କୁଣୀ
ଢାଳେ ଉମାଳୀ ଗୃହେ ନାହିଁ ପଦ୍ମିନୀ ରେ । ୧୪ ।

ଅଣାଇ ମୁଖ ଚାର ଭଷା କାଳର
ଅହି ଶୃଗାଳ ଠେଲି ଦେଖୁ ଇନ୍ଦ୍ର ଗୋ
ଅଇ ବର୍ଦ୍ଧେକ ପାପ ଶ୍ରୁତି ବଧିର
ଅଣ ଲେଖାରେ ଅଙ୍ଗ କର ପ୍ରୀତିର ଯେ । ୧୫ ।

ତଗର ପାଦ ବନ୍ଧୁ ଲପନ କଲ
ତମ ଗ୍ରାସନେ ଯେଣ୍ଡେ ସାଗର ବଳ ଯେ
ତରଙ୍ଗିଣୀ ନ ଚଳେ ଅମ୍ବୁ ବଢ଼ୀନେ
ତଡ଼ତ ନ ଚଳାଇ ବାରିଢ଼ ବିନେ ଯେ । ୧୬ ।



## * ସ୍ୱପ୍ନ *

ଗୋବନ୍ଦ ଚନ୍ଦ୍ର ନାୟକ

କି ସ୍ୱପ୍ନ ଦେଖଇଁ ଆଜି ଅର୍ଦ୍ଧ ଯାମିନୀରେ
ସ୍ୱାଧୀନ ମୋ ଦେଶ ସତେ ସପ୍ତ ବର୍ଷ ପରେ । ୧ ।
ମନେ ପଡେ ଯେଉଁ ଦନ ତିରଙ୍ଗୀ ପ୍ରାଙ୍ଗଣେ
କୁଳାଙ୍ଗାର ଜୟଚନ୍ଦ୍ର ସଂଯୁକ୍ତା ରମଣେ । ୨ ।
ପୁରଇଲେ ପ୍ରତିହିଂସାନଳେ ହୋଇ ବାଇ
ସେହି ଦିନୁ ଦୀପ୍ତ ରବି ତମସାରେ ଛାଇ । ୩ ।

ନିଶୀଥ ଗଗନେ ପୁଣି କନକ ବରଣେ
ଭୂଷିତ ମାର୍ତ୍ତଣ୍ଡ ଛବ ଆଲୋକ ଅରୁଣେ । ୪ ।

ବହଇ ମନ୍ଦ ମଳୟ ଦିନନାଥ ସାଥି
ଗାଅଇ ସ୍ୱାଧୀନ ଗୀତି ପେଣ୍ଡ କେତେ ପୋଥି । ୫ ।

ନବ ବେଶେ ନବ ଘବେ ଉପଗତା ମାଆ
ଶୁଖିନି ହସ୍ତରୁ ତାର ବନ୍ଧନର ଘାଆ । ୬ ।

ଷଡ଼ୁ ହାସ୍ୟମୟୀ ସେ ଯେ ରତନ ଭୂଷଣା
ନବଇ ତରୁ ପଲ୍ଲବେ ଗାଏ ମଧୁ ବୀଣା । ୭ ।

ଘଷଇ ଅମୃତବାଣୀ ଦଏ ଆଶ୍ୱାସନା
ଖଣ୍ଡିତା ଶରୀର ମୋର ଈଶ୍ୱର କଳ୍ପନା । ୮ ।

ଗରଳ ଅମୃତ ପ୍ରଭୁ କରିବେ ବାହାର
କୃଷ୍ଣ ଖୋଦା ହେବେ ଏକ ଦିଶିବି ସୁନ୍ଦର । ୯ ।

ନାହିଁ ଦୂର ସେହି ଦିନ ଦିଗ୍‌ବଳୟେ ଦେଖା
ହେଲଣି ମିଳନ ଛବି ଆରକ୍ତିମ ରେଖା । ୧୦ ।

ସମର ଶାନ୍ତର ଅଗ୍ରଦୂତ ଡାଣ ଯେଣୁ
ଗାନ୍ଧ ପୁଅ ବଜାଉଛି ବିମୋହନ ବେଣୁ । ୧୧ ।

ବଂଶୀର ତରଳ ତାନ କେ ଆଉ ରୋଧିବ
ମୋହନ ମୂର୍ଚ୍ଛନା ଯହିଁ ସୃଜଇ ତାଣ୍ଡବ । ୧୨ ।

ଥିଲା ଏକ ପୁଅ ମୋର ତାର ନାମ କୃଷ୍ଣ
ଦୁନିଆକୁ ଟାଣିଥିଲା ଭାଜି ପ୍ରେମଭଷ୍ଣ । ୧୩ ।

ନଚାଇଥିଲା ସେ ତରୁ ତରୁଣୀ ଭୁଧର
ହସ୍ତ ପରିମିତ ବଂଶେ ଦେଇ ମଧୁ ସ୍ୱର । ୧୪ ।

ମୋହନ ରୂପେ ସେ ଏବେ  ମଣ୍ଡେ ମୋର କୋଳ
ଷଣ୍ଢା ଶକଟା ରଚଣ କେ ଦେବେଟି ତାଳ । ୧୫ ।
ନାହିଁ ତାର ଅସ୍ତ୍ର ଶସ୍ତ୍ର  ବୋମା ପରମାଣୁ
ସ୍ଥକିତ ତା ଡାକେ  କିନ୍ତୁ ଗିରିଝର  ସ୍ଥାଣୁ । ୧୬ ।
ମାନବ ଶରୀର  ପ୍ରତି  ମନୁଷ୍ୟକୁ  ଏକ
ଶାଶ୍ୱତୀ ତତ୍ତ୍ୱରେ ବାନ୍ଧେ ଲଗାଇ ଚମକ । ୧୭ ।
ଭେଦା ଭେଦ ନାହିଁ ଜ୍ଞାନ ସର୍ବେ  ହରିଜନ
ଆଲିଙ୍ଗଇ  ମହାପ୍ରେମେ ଚଣ୍ଡାଳ  ବ୍ରାହ୍ମଣ । ୧୮ ।
ରମ ରମ ଆଲ୍ଲା ଆଲ୍ଲା କରେ  ଉଚ୍ଚାରଣ
ଅନ୍ତରେ ଜପଇ  ସଦା ଏକା ରମ  ନାମ । ୧୯ ।
ହୃଦୟରେ  ଶୋଭଇ ତାର  ବେଦ ଓ କୋରାନ
ସର୍ବ ଧର୍ମ  ସମନ୍ୱୟ ଭବ ଆଣେ  ଜାଣ  । ୨୦ ।
ଅଟଳ  ଅଚଳ ସେ ଯେ ଈଶ୍ୱର  ବିଶ୍ୱାସୀ
ଗୀତାର ପରମ ତତ୍ତ୍ୱ ପ୍ରସ୍ତରେ  ଆଶ୍ୱାସୀ । ୨୧ ।
ମାତା ମୁଖୁଁ  ଶୁଣୁଁ  ଶୁଣୁଁ  ଗାନ୍ଧୀ ଗୁଣ  ରଶି
ଆରମ ଦାୟିନୀ ନିଦ୍ରା ପୁଣି ଦେଲା ଗ୍ରାସି । ୨୨ ।
ସୁଷୁପ୍ତି  ଗରଭେ ବୁଡି ରହିଲି ଥୋକାଏ
ଦେଖିଲି  ନୂତନ  ସ୍ୱପ୍ନ  ଏସନ  ସମୟେ । ୨୩ ।
ଘନ ମେଘ ଉର୍ଦ୍ଧେ ଏକ ଉତ୍ତର  ପଶ୍ଚିମେ
ଘଣ୍ଟାକେ ଦେଲା ଘୋଡାଇ ପାକିସ୍ଥାନ  ଭୂମେ । ୨୪ ।
ତୋଳ୍ ତୋଳ୍ ସ୍ୱର୍ଣ୍ଣ  ସୌଧ  ଇସଲାମ ବୀର
କ୍ୱାଏଦ ଆଜାମ ଜିନ୍ନା  ହୋଇଲେ ଅସ୍ଥିର । ୨୫ ।
ଡାକ ଦେଲେ ରଖ ଆହେ ଉଲଗ୍ନ ଫକୀର
ଭସିଗଲୁଁ ଉବଡଲେ କି କଲ ମନ୍ତର  । ୨୬ ।

ଭଇ ଖୁଦ୍‌ମଦ୍‌ଗାର ଛୁରିକା ଗଳାର
ମାରଇ ପଶ୍ଚାଦ୍‌ପଟୁଁ ଆସିଣ ସତ୍ତୁର । ୨୭ ।
ଶୁଣି ସେ ବକଳ ଡାକ କହେ ଗାନ୍ଧୀବୁଢ଼ା
ଛାଡ ବାବୁ ! ଏବେ ସେହି ବୁଦ୍ଧି ଘର ବୁଢା । ୨୮ ।
ସବବେ ସନ୍ତାନ ଆମେ ଗୋଟିଏ ମାଆର
କିଏ ହିନ୍ଦୁ ମୁସଲିମ ଖିଦମଦ ଗାର । ୨୯ ।
ଅମୀୟ ମଧୁର ବାଣୀ ମାଦକତା ଭର
ଭଇକୁ ଡାକଇ ପାଶେ ହୋଇ ଆତ୍ମ ହର । ୩୦ ।
ସର୍ବତ୍ର ଭଇର ଡାକ ତ୍ରିରଙ୍ଗ ପତାକା
ନମସ୍ୟ ଭରତ ପାକିସ୍ଥାନେ ନାହିଁ ଦକା । ୩୧ ।
ସତ୍ୟ ଅହିଂସାର ଚକ୍ର ବ୍ରହ୍ମଚର୍ଯ୍ୟ ରୂପ
ଧରେ ସେ ପତାକା ଗୋଟି ଶୋଭେ ଅପରୂପ । ୩୨ ।
ଜାତି ବର୍ଣ୍ଣ ଚିହ୍ନ ନୁହେ ଗୁଣର ପ୍ରତୀକ
ଆଙ୍କିଛି ଅନେକ ଦିନୁ ମୋହନ ତାନ୍ତ୍ରିକ । ୩୩ ।
ସଫଳ ସ୍ୱପ୍ନ ତାହାର ଆଜ ଏତେ ଦିନେ
ସତ୍ୟ ଅହିଂସାର ବାଣୀ ବାଜେ କାନେ କାନେ । ୩୪ ।
ଆନନ୍ଦେ ଉତ୍‌ଫୁଲ୍ଲ ଯେବେ ସର୍ବ ନରନାରୀ
ପ୍ରେମିକ ଭବଇ ସ୍ୱପ୍ନେ ଖେଦ ଜଳେ ଘାରି । ୩୫ ।
ମୋ ପାଇଁ ଆନନ୍ଦ କିଛି ନାହିଁତ ସଂସାରେ
ଶୋଭେ ନାହିଁ ଯେତେ ଦିନ ତା କର ମୋକରେ । ୩୬ ।
ନିର୍ମମ ସମାଜ ରଚେ ଅଭେଦ୍ୟ ପ୍ରାଚୀର
ନୋହୁଁ ଏକ ଜାତି ତେଣୁ ରହୁ ଦୂର ଦୂର । ୩୭ ।
କାହିଁ ସେହି କାହିଁ ମୁହିଁ ରଚେ ସ୍ୱର୍ଗ ପୁରୀ
କା ପାଇଁ ଅମାପ ପାନ କରେ କାଦମ୍ବରୀ । ୩୮ ।

ଯବେ କି ଆସିବ ବାଳା ବସିବ ମୋ କୋଳେ
ଆଙ୍କିବ ଶତ ଚୁମ୍ବନ ତା ରକ୍ତ କପୋଳେ । ୩୯ ।
ମନେ ପଡ଼େ ଏକ ବର୍ଷ ପୂର୍ବେ ଏହି ଦିନ
ପ୍ରଥମ ସାକ୍ଷାତ ପରେ ନୟନ ମିଳନ । ୪୦ ।
ପନ୍ଦର ଅଗଷ୍ଟ ଅନବିଂଶ ସନ୍ତଳିଶ
ଆସିଛି ନବୀନ ବେଶେ ପର ଏକ ବର୍ଷ । ୪୧ ।
ଜାଣେନା ଆଣନ୍ତି ଯଦି ପ୍ରିୟାର ସନ୍ଦେଶ
ପ୍ରେମହୀନ ଦୁନିଆଁର ହେଉ ଶିଘ୍ର ଧ୍ୱଂସ । ୪୨ ।
କି ରୂପ ଦେଖଇ ପ୍ରାଣ ପୁଲକଇ ଛାତି କରେ ଦାଉ ଦାଉ
ଡରାଇଲେ ଜର କହେ ଛାଡ଼ ଛାଡ଼, ତୁହେଁ ମୁଁ ତୁମର ଆଉ । ୪୩ ।
କିଏ ସେ ଏ ବାଳା ନୀରବେ ... ... ନିସ୍ତରଙ୍ଗ ନିଦ୍ରା
ଗଭୀର ଆବେଗେ ଉଠିଯାଏ ହୁ... ...ଇ ଆଉ ତନ୍ଦ୍ରା । ୪୪ ।
ଏହି ସେହି ଛବି ଦର୍ଶନେ ଯା ଦ୍ରବି ଥିଲା ଏ କର୍କଶ ପ୍ରାଣ
ଯାର ...ଟି ହିତ ...ଥିଲା ଶତ ଧାଇବାକୁ ରଣପଣ । ୪୫ ।
ସମାଜ ଦାଉରୁ ରହିଥିଲା ସେତ ଦୂରେ ଦୂରେ ବହୁଦୂରେ
କିଏ ପୁଣି ଆଜ ଆଣି ଦେଲା ପାଶେ ଏଇ ଲୌହ କାରାଗାରେ । ୪୬ ।
କଧୁକ ଅଧରେ ...ତ ହାସ୍ୟ ଭରେ ଭରେ ମଞ୍ଜୁ ବାଣୀ ଧୀରେ
ଜାଣନା କି ... ଆଶା ଦେଖା ନେଇଛି ନବ ମନ୍ତ୍ରରେ । ୪୭ ।
ସ୍ୱାଧୀନ ଜଗତେ କେ ରୋଧିବ ମୋତେ ଭଙ୍ଗିବି ଲୌହ ଅର୍ଗଳ
ପ୍ରେମ କି ମାନଇ କୁଳ ମାନ ଜାତି ସିନ୍ଧୁ ବନ ନଦୀ ଶୈଳ । ୪୮ ।
ଶୁଣିଲି ମୋ ଦେଶ ହୋଇଛି ସ୍ୱାଧୀନ ଜଣକ ସାଧନା ବଳେ
ଯବନ ଖ୍ରୀଷ୍ଟାନ ହିନ୍ଦୁ ହରିଜନ ସର୍ବେ ଯେଣୁ ଟାଣେ କୋଳେ । ୪୯ ।
ଦୁନିଆଁକୁ ପ୍ରେମ କରେ ସେ ସାଧକ ମୋ କଥା ସେ କି ନ ଜାଣେ
ପ୍ରେମିକ ବନ୍ଧୁଙ୍କୁ ନ ପାଇବୁଁ ଯେବେ ସ୍ୱାଧୀନତା ତୁଚ୍ଛ ମଣେ । ୫୦ ।

ଘେନି ତୋ ଆଶୀଷ ଅସେ ତୁମ ପାଶ ହେ ପବଣ ସଖା ମୋର
ସମାଜ ଶୃଙ୍ଖଳ ଫେଡ ଧାତିକାର କରବାରେ ଅଭସାର । ୪୧ ।
ଶୁଣି ଏ ମଧୁର ମାଦକ ବଣ୍ଢେର ପ୍ରେମ ବଚନ ସଖିର
ନାଚି ନାଚି ଯେବେ ବଜାଇଲି ଜର ସ୍ୱପନ ହୋଇଲା ସାର । ୪୨ ।



## ଖଡ଼ିଆଳାଧିପତି ରାଜା ଅର୍ଦ୍ଧବାଣ ଦେବଙ୍କ ରୌପ୍ୟକ ଜୟନ୍ତୀ ଉପଲକ୍ଷେ ରଚିତ

### * ଶୁଭେଚ୍ଛା ଜ୍ଞାପନ *

-ଶ୍ରୀ ପୂର୍ଣ୍ଣଚନ୍ଦ୍ର ଠାକୁର

ଜୟ ହେ ଜୟ ହେ ଦେବ ଶ୍ରୀ ଶ୍ରୀ ଅର୍ଦ୍ଧବାଣ ଦେବ
ବିପୁଳ ଜନ ଆରତ ଧ୍ୱଂସୀ ।
ଚୌହାନ କୁଳ ଭୂଷଣ ନରେନ୍ଦ୍ର ମୌଳି ମଣ୍ଡନ
ଜେଉଁ ଦେବତା ଅଛ ଆସି ॥
ରୌପ୍ୟକ ଜୟନ୍ତୀ ଗାନେ ସଗର୍ବେ ଅଭିନନ୍ଦନେ
ପୁଲକିତ ଖଡିଆଳ ବାସୀ ।
ଖଡିଆଳ ଜନମନ ମନ୍ଦିର ନିକେତନ
ପ୍ରକୃତି ଆନନ୍ଦ ବିଳାସୀ ॥
ଚନ୍ଦ୍ରବଂଶେ ପ୍ରସବିତ ସଦ୍‌ଗୁଣାବଳୀ ମଣ୍ଡିତ
ସୁଧା ଧବଳିତ ଯଶରାଶି ।

ଉତ୍କଳ ଜନନୀ ପ୍ରାଣ          ବରେଣ୍ୟ ଯୋଗ୍ୟ ସନ୍ତାନ
ସଜୋଚତ ଗୁଣ ପରକାଶି ॥
ପଙ୍କଜବାସିନୀ ଦାନେ          ପଙ୍କଜ ବାସିନୀ ମାନେ
ଉତ୍କଳ ଗୌରବ ବିକାଶି ।
ପ୍ରକୃତି ପ୍ରଶଂସିତ          ଗଡ ଭକ୍ତି ଶୋଭିତ
ସୁଭଷୀ ସୁକାଶୀ ସୁହାସୀ ॥
ମଙ୍ଗଳମୟୀ ଚରଣେ          ମଙ୍ଗଳ ଜୁବିଲୀ ଦିନେ
ମଙ୍ଗଳ ତବ ମନାସୀ ॥
ଶ୍ରୀ ସମଲେଶ୍ୱରୀ          ଖଡିଆଳଯେଶ୍ୱରୀ
ଅଶୀଷ ଢାଳନ୍ତୁ ଗଣି ଗଣି ॥

(ରୌପ୍ୟକ ଜୟନ୍ତୀ ଉତ୍ସବରେ ତା. ୧୫-୪-୧୯୪୬ ଦିନ ଖଡିଆଳ ଗଡଦରବାରରେ ଲେଖକଙ୍କ ଦ୍ୱାରା ପଠିତ)





## ସ୍ୱପ୍ନ

-ସଲୋମନ ଛତ୍ରିଆ

ନୀରବ ନିଶୀଥ କାଳେ ନିଦ୍ରିତ ଧରଣୀ ପରେ,
କର୍ମକ୍ଳାନ୍ତ ମାନବର ବିଶ୍ରାମ କାଳରେ ।
କିଏ ତୁମେ ! ଚଳିଆସି ଅତି ଗୋପନରେ,
ଅଙ୍କି ଦିଅ କେତେ ଦୃଶ୍ୟ ମାନସ ପଟରେ ।
ନିଦ୍ରାଦେବୀ ରଇଜର ନିସ୍ତବ୍ଧତା ଭଜି
କିଏ ତୁମେ ଉଭୁଅ ଅପରୂପ ସାଜି ।

ଘେନିଯାଅ ମୁହୂର୍ତ୍ତକେ ସୁସୁପ୍ତ ମାନବେ,
ରମଣୀୟ, କୌତୁହଳ ଅବାସ୍ତବ ରଜ୍ୟେ ।
କିଏ ତୁମେ ନିଦ୍ରାଗ୍ରସ୍ତ ମନୁଷ୍ୟ ମନରେ,
ମଧୁର ସଂସାର ଗଢ ନିମିଷ ମଧ୍ୟରେ ।
ପରବାସୀ ପ୍ରେମିକକୁ ଆଣି ପ୍ରିୟାପାଶ,
ବିରହିଣୀ ଜୀବନକୁ କରଅ ସରସ ।
ରୂପବତୀ ତରୁଣୀର ଚୁମ୍ବାଇ ଅଧର,
କାମାତୁର ପ୍ରେମୀକକୁ କରଅ ପାଗଳ ।
ଜରଜୀର୍ଣ୍ଣ ସ୍ଥବିରକୁ ଅର୍ପି ଯଉବନ,
ଅପୂର୍ଣ୍ଣ ବାସନା ସବୁ କରିଥାଅ ପୂର୍ଣ୍ଣ ।
କିଏ ତୁମେ ମିଥ୍ୟାଧନ ଦରିଦ୍ରେ ବତରି,
ଅସୀମ ଆନନ୍ଦ ତାର ମନେ ଦଅ ଭରି ।
ନିରନ୍ନ ଅଗ୍ରତେ ରଖି ସୁମିଷ୍ଟ ଭୋଜନ,
(ତାର) ମନ ମଧ୍ୟେ କୁତୁହଳ କରି ଉଦ୍ଦୀପନ ।
କିଏ ତୁମେ ନିମିଷକେ ଧନୀ ଧନ ହରି,
ଚଣ୍ଡାଳକେ ଯୋଡଜାଳ ଦେଇଥାଅ ଛାଡ ।
ରଜାଧିପତି ରଜାଙ୍କୁ ଗାଦୀ ଚ୍ୟୁତ କରି,
ରତ୍ନସିଂହାସନେ ଥୁଅ ଭିଖାରୀକି ଆଣି ।
କିଏ ତୁମେ ସୃଷ୍ଟି କାଳ ସଂଗୋପନେ ରହି,
ଦୂର ଭବିଷ୍ୟତ କଥା ଦେଉଥାଅ କହି ।
ଅତୀତ ବିଷୟ ସବୁ ସ୍ମରଣ କରାଇ,
ନରମନେ କେତେ ଭାବ ଦଅ ପଶଗଇ ।

କିଏ ତୁମେ ବାଜିକର ଅସାଧ୍ୟ ସାଧକ,
ଅଦ୍ଭୁତ ଘଟକମାନ କରଅ ପ୍ରତ୍ୟକ୍ଷ ।
ପଙ୍ଗୁକୁ ଲଙ୍ଘାଅ ହେଲେ ତୁଙ୍ଗ ଗିରିଚୂଳ,
ଅନ୍ଧକୁ ଦେଖାଇ ଦିଅ ବିଚିତ୍ର ସଂସାର ।
ମୂକ ମୁଖେ ଦେଇ ଯାଅ ଅସରନ୍ତି କଥା,
ବଧିରେ ଉତ୍‌ଫୁଲ୍ଲ କର ଶୁଣାଇ ସେ ଗାଥା ।
ନିରଶ ରୋଗୀଜନକୁ କର ସ୍ୱାସ୍ଥ୍ୟବାନ,
ବନ୍ଧ୍ୟା'କୋଳେ ଦେଇଥାଅ ଦିବ୍ୟ ଶ୍ରୀ ସନ୍ତାନ ।
ତୁମେ ପରା ଅଟ ସେହି ଅଦୃଶ୍ୟ ସ୍ୱପନ
ଶାର୍ଦ୍ଦୂଳ ଜନେ କେବଳ ଯେ ଦିଅ ଦର୍ଶନ ।
ତବ କାର୍ଯ୍ୟ ମିଥ୍ୟାମୟ ନିରର୍ଥକ ବୋଲି,
ଅଜ୍ଞାନ ମାନବ ସଦା ଭାବୁଥାଏ ଖାଲି ।
ସେଥିପାଇଁ ତବ ନାମ ଦେଇଛନ୍ତି 'ସ୍ୱପ୍ନ',
କିନ୍ତୁ ତହିଁ ଗୁଣ ତଥ୍ୟ ରହିଛି ପ୍ରଚ୍ଛନ୍ନ ।
ମର୍ତ୍ତ୍ୟଠାରୁ ତବ ରାଜ୍ୟ କେବେ ନୁହେ ହୀନ,
ଦୁହିଁର କାର୍ଯ୍ୟ କଳାପ ଅଟଇ ସମାନ ।
ଅବୋଧ ବୁଝିନିଏ ସତ୍ୟ ଏ ଦୁନିଆଁ,
ଜ୍ଞାନୀ ସବେ ସ୍ୱପ୍ନ ପରି ଅଟେଇ ଜାଣିଆଁ ।
ଧନ୍ୟ ! ଧନ୍ୟ ! ଧନ୍ୟସ୍ୱପ୍ନ !!! ଧନ୍ୟ ତୋର କଥା,
ଧନ୍ୟ ! ଧନ୍ୟ ! ଧନ୍ୟ ତୋର ଦୂର ଦରଶିତା ।
କହିଥିଲ ଦିନେ ଯାହା ସୁପ୍ତ ଭରତରେ,
ଫଳବତୀ ହେଲା ତାହା ଏବେ ଦିନ ପରେ ।



# ପ୍ରଦୀପ

- ଶିଶିର କୁମାର ଗୋସ୍ୱାମୀ

ଉଷସୀ ଆଗମେ-ତନ୍ଦ୍ରାଳସ ଭୂମେ
ତମସା ଗୋ ଯେବେ ଆସେ ଛାଇ ।
ଅରୁଣ କିରଣ ବିଲୀନ ହୁଅନ୍ତେ
କୁହେଳି ଆଚ୍ଛନ୍ନ ଥାଏ ମହି ।୧।
ସେ ବେଳେ ପ୍ରଦୀପ ତୁମରି ଆଲୋକ
ବଢ଼ାଏ ମାନବ ପଥ ଗହନ ।
ନିଶାର ନିବଡ ଅନ୍ଧକାର-ମୋହ
ଅପସାରି ବାଢ଼େ ନିଜ ଜୀବନ ।୨।
କ୍ଷୁଦ୍ର ହୋଇ ଶୁଦ୍ଧା ହିମାଂଶୁ, ତପନ
ସମକର ତୁମେ କର୍ମ ସାଧନ ।
ବତର ଆଲୋକ ଜଗତ ବୁକେ
ତୁମେ କୁଟୀ-ତମ ନାଶନ ।୩।
ତୁମ ଦିପ୍ତିଶିଖା ମହତ ଅଳୀକ
ମରତ ଜୀବନ ତୁମରି ପ୍ରତୀକ ।
ପାପ ମୋହ ଲୋଭ ଅଜ୍ଞାନେ ଜଡତ,
ମୁକ୍ତି ଶାନ୍ତି ପଥ କଣ୍ଟକିତ ।୪।
ବିଶ୍ୱ ସ୍ରଷ୍ଟା ଜ୍ୟୋତି ତୁମେ ହେ ପ୍ରଦୀପ
ଦିଅ ଦିବ୍ୟ ଜ୍ୟୋତି ପ୍ରେରଣା ଆଲୋକ
ପିଛଳ-କଣ୍ଟକ ପିହୀତ କୁପଥ
ହେଉ ସୁଖପ୍ରଦ ଅଲୋକିତ ।

ସତପଥେ ସଦା ଜୀବନ ମୋ ବାହି
ଚଳିବି ନିରତ ଧର୍ମରତ । ୫ ।
ସବୁ ବାଧା ବିଘ୍ନ ତେଜ ଅଜ୍ଞାନ, କର୍ମଧର୍ମ ପ୍ରଜ୍ଞା-ବିହୀନ-ଜୀବନ
ଅପସରି ଯାଏ ସବୁ କ୍ଷଣେ ।
ଯାଏଁ ଫେରି ମୁଁ ଗୋ ସେ ସୁନ୍ଦର ଭୂମେ,
ତବ ଶାନ୍ତ ମୁକ୍ତି ପୁଣ୍ୟ ଧାମେ । ୬ ।

* * *

* ଖଡ଼ିଆଳ ସାହିତ୍ୟ ସମିତିର ଚତୁର୍ଥ ଅଧିବେଶନରେ ପଠିତ ।



## * ସ୍ୱପ୍ନ *

-ସ୍ୱର୍ଗତ ଉମାକାନ୍ତ ମୁଣ୍ଡ

ନିଶି ଶେଷେ ଶଯ୍ୟାପାଶେ ସ୍ୱପ୍ନରାଣୀ ବେଶେ
ଆସି ହର୍ଷେ ମିଷ୍ଟ ଭାଷେ ଯେବେ ନିଦ୍ରା ବେଶେ ।
ଥିଲି ଗାଢ ସ୍ୱପ୍ନେ ମାତି କହିଲ ଯା ହୃଦ
ଭଙ୍ଗା କାହାଣୀ, ଶୁଣିଛି ମନେ ଅଛ ତନ୍ଦ୍ରାଳସେ ।
ସେତେବେଳେ କହିନି ତ ପଦେ ହେଲେ କଥା,
ତବ ଆଦେଶେ ଆକାଶେ ହସେ କେବେ ଶଶି
କେବେ ଅବା ଘନଘଟା ଅନ୍ଧକାର ବ୍ୟାପେ
ବାରିଧର ଆବରଣେ ଯାଏ ଢଳି ନିଶି ।

ପୁଣି ଆସେ ଦିନ ଧରାବକ୍ଷେ ବହିଯାଏ
ତବ ଇଙ୍ଗିତେ ବସନ୍ତେ ମନ୍ଦ ମଧୁର ମଳୟ
ହସେ ଫୁଲ, ଗାଏ ପିକ, କିନ୍ତୁ ନଷ୍ଟ ହୁଏ
ତାହା ଗ୍ରୀଷ୍ମ ଆଗମନେ, ସ୍ୱପ୍ନ ପରି ଯାଏ ଢଳି
ଦିନ, ମାସ, ବର୍ଷ ଯୁଗ ସ୍ୱପ୍ନରାଣୀ ମାୟାବିନୀ
କୁହୁକିନୀ, ଯାଦୁକରୀ ନୁହଁନି ଗୋ ତୁମେ ?



## ଋତୁରାଜ

— କୁମୁଦ ବନ୍ଧୁ ଯୋଷୀ

ଋତୁରାଜ ବସନ୍ତ ଆଗତ ବିଶ୍ୱେ
ସଉନ୍ଦର୍ଯ୍ୟ ସାଗରେ ଜଗତ ଭସେ ।
ଦକ୍ଷିଣ ଦିଗୁଁ ବହି ମଳୟାନିଳ
ଜଡ଼ରେ ଅକର୍ମା ଜନେ କରମ ଶୀଳ ।
ଉପବନ ସୁଷମା କହି ନୁହେଁ ତ,
ତରୁଲତା ପଲ୍ଲବ ଫଳେ ଶୋଭିତ ।
ବିକଶିତ କୁସୁମ ସୌରଭ ଢେଳି,
ସଞ୍ଚରେ ଗନ୍ଧ ବହ ସାରା ମେଦିନୀ ।

ବୃକ୍ଷଡାଳେ କୋକିଳ ବସି ନିଶ୍ଚଳେ
ପଞ୍ଚମ ସ୍ୱର ସୁଧା ମହୀରେ ଢାଳେ ।
ସେ ଅମୀୟ ସଙ୍ଗୀତ ଶ୍ରବଣେ ଶୁଣି,
ପ୍ରାଣୀ କୁଳ ଉଲ୍ଲାସ ଅନ୍ତର ପୁଣି ।
ଦିଏ ପ୍ରେମ ଚୁମ୍ବନ ପ୍ରସନ୍ନ ମୁଖେ
ପ୍ରସ୍ଫୁଟିତ କୁସୁମେ ଭ୍ରମର ସୁଖେ ।
ପଙ୍କଜ ସରୋବରେ ଦଶଇ ଶୋଭା,
ବଢ଼ଇ ତେଣୁ ଭବେ ବସନ୍ତ ଶୋଭା ।
କୁଳୁ ରବେ ତଟିନୀ ବହଇ ଖରେ,
ବସନ୍ତ ମହିମାକି ପ୍ରକାଶ କରେ ।
ଧନ୍ୟ ତୁ ଋତୁରାଜ ଧନ୍ୟ ତୋ କାମ,
ଏ ହେତୁ ଋତୁରାଜ ତୋହର ନାମ ।
ସକଳ ମନେ ଦେଉ ତୁହି ଉଲ୍ଲାସ,
ତେଣୁ ତୋର ମହିମା ବର୍ଣ୍ଣେ ପ୍ରକାଶ ।
ସଉନ୍ଦର୍ଯ୍ୟର ଖଣି ତୁହି ବସନ୍ତ,
କହି ନୁହେ ଜଗତେ ତୋର ମହତ୍ତ୍ୱ ।

  

* ଖଡଆଳ ସାହିତ୍ୟ ସମିତି ଅଧିବେଶନରେ ପଠିତ ଓ ୩ୟ ସ୍ଥାନ ଲାଭ କରି ପୁରସ୍କୃତ ।



# ବର୍ତ୍ତମାନ

– ଉପେନ୍ଦ୍ର ନାଥ ପଣ୍ଡା

ବର୍ତ୍ତମାନ ପୋତ କାଳ-ସ୍ରୋତେ ଭସି
କରେ ନିଜ କାର୍ଯ୍ୟ ବିଶ୍ୱ ବକ୍ଷେ ଆସି ।
ଅତୀତ ତାହାର କରମ ଅଚଳେ
ଲୀନ ହୋଇ ଅଛି କାଳ କବଳରେ ।
ବର୍ତ୍ତମାନ ପରେ ଆସିବ କିଛି ତ ?
ସେ ଏକା ସଂସାରେ ଅଟେ ଭବିଷ୍ୟତ ।
ଏପରି ସଂସାରେ ଏହି ତିନି ଗୋଟି
ସବୁ ସମୟରେ କରୁଛନ୍ତି ଗତି ।
ବର୍ତ୍ତମାନ ଯାଇ ହୁଏ ତା ଅତୀତ
ପୁଣି ବର୍ତ୍ତମାନ କରଇ ଆଗତ ।
ବର୍ତ୍ତମାନ ଯଦ୍ଧୁ ଅତୀତରେ ମିଶେ
ଭବିଷ୍ୟତ ଗୋଟି ବର୍ତ୍ତମାନେ ଆସେ ।
ଯେହ୍ନୁ (ବର୍ତ୍ତମାନ) କରେ ଖେଳା ଚକ୍ଷୁ ସମ୍ମୁଖରେ
ଅଟେ ଦୀପ୍ତିମୟ ମନୁଷ୍ୟ ନେତ୍ରରେ ।
ଯେହ୍ନୁ କରି ଭବିଷ୍ୟତ ଅନ୍ଧକାର
କି ହେବ କେ ଜାଣେ ଶକତି କାହାର ?
ବର୍ତ୍ତମାନ ଦେଶ, ଧର୍ମ ଓ ଶକ୍ତିର
ପରିସ୍ଥିତି ଦେଖି କାର୍ଯ୍ୟ କରିବାର ।

ପ୍ରତିମାନଙ୍କର ଅଟଇ ଉଚିତ
ଯା କଲେ ଦେଶକୁ ମିଳଇ ଗୌରବ ।

କେବଳ ପୁରୁବ ସୁଖ ସ୍ମୃତି ହେଜି
ଅବା ପୂର୍ବ ଦୁଃଖେ ସଦା ରହି ମଜ୍ଜି ।

କି କରି ପାରିବା ଆଜ୍ଞ ଏ ସଂସାରେ ?
ଭସି ଯିବ ସବୁ ସ୍ୱପ୍ନ – ବାରିଧିରେ ।

ଭବିଷ୍ୟତେ ପୁଣି କରିବା କରିବା
କହୁଥିଲେ କିଛି କରି ନ ପାରିବା ।

ହେବ ଦଶାନନ କଳ୍ପନା ସମାନ
(ଯେପରି) କରି ନ ପାରିଲା ସ୍ୱର୍ଗକୁ ସୋପାନ ।

ତେଣୁ ବର୍ତ୍ତମାନେ କରିବା ସମସ୍ତ
ଏହିପରି ଶକ୍ତି ଦଅ ହେ ଅନନ୍ତ ।

✱ ତୃତୀୟ ବିବେଚିତ ହୋଇ ପୁରସ୍କୃତ ।



# ✱ ପ୍ରଦୀପ ✱

ସ୍ୱର୍ଗତ କାମରତ୍ନ ଶର୍ମ୍ମା

ବିଶ୍ୱ କୁଞ୍ଜେ ତୁମ୍ଭ ତୁମ୍ଭ ଯେ ସତ୍ୟ ପ୍ରଦୀପ ।
ଦେଲ ଜାଳି ହୃଦ ଗୃହେ ହେ ପ୍ରାଣ ଅଧିପ । ୧ ।

ଜାଳିବି ତା ଘରେ ଘରେ ଅନ୍ତରେ ଅନ୍ତରେ ।
ସୁନ୍ଦର ଅରୁଣ ସ୍ୱର୍ଣ୍ଣ କିରଣ ଅକ୍ଷରେ । ୨ ।

ବଜ୍ର – ରବେ ଭୀମ ସତ୍ୟ ଡମ୍ବରୁ ବଜାଇ ।
ଆସୁ ମୃତ୍ୟୁ ଝଞ୍ଜାଦୀପ ରଖିବି ଜଳାଇ । ୩ ।

ମହାବଳ ଶତ୍ରୁସେନା ସାଗର ଗର୍ଜ୍ଜନ ।
ଦେବ ନାହିଁ ସେ ପ୍ରଦୀପେ କାତର କମ୍ପନ । ୪ ।

ଯାଉ ଧନ ଯାଉ ମାନ ଜ୍ଞାନ ଗୌରବ ।
ଲୋଟୁ ଦାରିଦ୍ର୍ୟ ଶ୍ମଶାନେ ମହାମହୋତ୍ସବ । ୫ ।

ବିପଦ ରଜନୀ ପଥେ ମୋ ଆଶା ଗୋଧୂଳି ।
ଯାଉ ମରି ବଜାଇବି ସତ୍ୟ ଜୟ ତୂରୀ । ୬ ।

ବଳି ଦେବ ମ୍ଳାନ ଅଙ୍ଗ ସତ୍ୟର ଚରଣେ ।
ଜାଳିବ ଜ୍ୟୋତିର ଜ୍ୟୋତି ପ୍ରଦୀପ ଭୁବନେ । ୭ ।



# ✵ ମାତୃଭୂମି ✵

ଶରତ୍ କୁମାରୀ ଦେବୀ

ଧନ୍ୟ ମାତୃଭୂମି ସୁଦୟାବତୀ ।
ଅସୀମ ସମ୍ପଦ ଦେଉଛୁ ନିତି ।୧।

ଛଦେନୀ ରତ୍ନ ଅଙ୍ଗ ଅଳଙ୍କାର ।
ଫୁଟି ରଂଜିତ ଅଳକା ନିକର ।୨।

ନବ ଦୁର୍ବାଦଳ କୋମଳ ଅଙ୍ଗେ ।
ବିଶ୍ୱ ଲୀଳା ଦୋଳ ଝୁଲେନି ଶଙ୍ଗେ ।୩।

ଅନନ୍ତ ନଭେ ଦିନେଶ ଉଦ୍ଦୀତ ।
ଛାୟା କିବା ନଭେ ଶଶୀ ସମ୍ଭୂତ ।୪।

କିବା ନବଘନ ପଟହ ନାଦୀ ।
ଝଟ ଝଟ ବିଦ୍ୟୁ ଚିଗଳା ଛାଦୀ ।୫।

ବକ୍ଷୋଣ ଅମୀୟ ସରିତ ଧାର ।
ଜୀବନ ମୁକୁରେ ବିମ୍ବିତ ଧାର ।୬।

ଧନ୍ୟ ମାତୃଭୂମି ତୋ ଦୃଢ଼ ବ୍ରତ ।
ଦୁଃଖେ ସୁଖେ ସଦା ସମ ସୁସ୍ଥିତ ।୭।

ତୋହ କୋଳ କେହି ନାହିଁ ଗୋ ବିତି ।
ବନେ ଉପବନେ ବିହଗ ଗୀତି ।୮।

ମୃଦୁଳ ସମୀରେ ତରୁ ଲତିକା ।
ନାଚେ ସୁବେଶେ ନବ ପଲ୍ଲବିକା ।୯।

ସୁମନେ ସୁମନ ପରାଗ ବୋଳ ।
ମଧୁର ଆସ୍ୱାଦେ ସୁଫଳ ଫଳ । ୧୦ ।

ଅଗୁରୁ ସୁଦୂରୁ ଚହଟି ଉଠେ ।
ତୋ ସ୍ନେହ ତସ୍କର ମାନସ ଲୁଟେ । ୧୧ ।

ନ ମଣୁ ତିଳେ ଅସାର ସୁସାର
ସଚରାଚରେ ନାହିଁ ପରାପର । ୧୨ ।

ଯା ପ୍ରସାଦେ ଦେବେ ସ୍ୱର୍ଗେ ଅମର ।
ସେ ଭକ୍ତେ ଅଭୟ ଯେ ପଦେ ତୋର । ୧୩ ।

ତହିଁ ମୋ ପ୍ରଣତି କରୁଣା ଢାଳୁ ।
କାମନୀତ ଝରୀ ଭରି ଉଛଳୁ । ୧୪ ।



## ପ୍ରଭାତ ପଦ୍ମିନୀ

— ଦେବାନନ୍ଦ ସେନାପତି

ଚାହଁ ଅୟି ପୁରବାଳା ଚାହଁ ଚାରୁହାସି, ଗୋ
ଆସୁଛନ୍ତ ତଟପୁରେ ଦୂର ପରବାସୀ ଗୋ
ତବ ଅରି ବଉଚରୀ ପାଏ କାହିଁ ଅପସରି
କୁମୁଦିନୀ ମୁଖ ଦେଖ ଝାଉଁଳା ଗୋ ନଳିନୀ
ହତଶିରୀ ଗର୍ବିତା ରଜନୀ ॥ ୧ ॥

ତାର ବଧୂ ଲୁଚିଲେଣି ଭୟଭୀତେ ସତି ଗୋ
ଚକୋର କାତର ଦେଖ ପରପୀଡ ଗତି ଗୋ
ଫିଟି ଯାଇଛି ସୁନ୍ଦର ପରଟୀ ଦଶେ ସୁନ୍ଦର
ଅନ୍ଧକାର ରଖବାକୁ ହୁଅ ସଜ ସାଙ୍ଗ ଗୋ
ଆଉ କାହିଁ ଏତେ ଲାଜ ଲାଜ ଗୋ ॥ ୨ ॥

ମନ୍ଦର ମଳୟ ଗାଏ ଚଳ କିଶଳୟ ଗୋ
ସରବକ୍ଷ ନାଚେ ତାଳେ ହୋଇ ବିଚମୟ ଗୋ
କାନନ କୁସୁମେ ଅଳି ବୀଣା ବାଇ କରିବ ଅଳି
ସଜ ସୁମନସ ବକ୍ଷ ଖୋଲେ ମନ୍ଦ ପବନେ
କର ସତି ଉନ୍ମୀଳ ନୟନ ! ॥ ୩ ॥

ଉଷାବଧୂ ପାଡ଼ଲାଣି ଯାଜ ନବ ସନ୍ଧାରେ
ମୁଖେ ବୋଳି ନବାରଙ୍ଗ, ହସେ ନବ ବିଭବରେ
କୋକିଳ ପଞ୍ଚମ ତାନ ବିହଗ ପ୍ରଭତୀ ଗାନ
ଭସି ଆସି ସର-ବିଚି-ତାଳେ ମିଶେ ରୂପସୀ
ମୁଖ ତୋଳ, ହସି ଉଠୁ ଉରସୀ ॥ ୪ ॥

ଉଲ୍ଲସି ଉଠିଲେଣି ଧୀରେ ଲତାପାଦପ
ସୁପ୍ତିରୁ ଉଠି କାମେ ଲାଗିଲାଣି ମାନବ
ଘାଟେ ଆସି ନବବଧୂ ପଖାଳି ଅଧର ମଧୁ
ଅଚନୁର ପୂଜା ଶେଷେ ଅବଗାହେ ନୀରେ ଗୋ
କମଳନୀ ରହିଁ ସର ତୀରେ ଗୋ ॥ ୫ ॥

ଛଳ ଛଳ କରି ଆଖି ଚାହିଁଲେଣି ପ୍ରିୟ ଗୋ
ଅଭିମାନ ତେଜ ଗଣ୍ଡେ ମୃଦୁ ଚୁମ୍ବ ନିଅ ଗୋ

ଚକ୍ରବାକ ପ୍ରେମେ ଡାକି କହେ ପ୍ରିୟା ଚକ୍ରବାକି
ବିରହର ପରେ ପ୍ରେମ ମଧୁମୟ ସରସ
(ତୁମ) ମୁଖେ ଫୁଟୁ ସ୍ମିତ ହାସ ହରଷ ॥ ୬ ॥

ମିତ୍ର ତୁମ ଲାଗି ଋଲି ବହୁ ଦୂର ସରଣୀ
ଦୋଷି ଷମ ଆକୁଳରେ ରହିଁଛନ୍ତ ଧରଣୀ
ତୁମରି ପରଶ ପାଇଁ କର ବାଢ଼ିଛନ୍ତି ରହି
ସତୀ ହୋଇ ଦାଉ ସାଧ, ପତି ସହ ଛଳନା ?
ଶୋଭଇ କି ତୁମ ନବ ଯୌବନା ? ॥ ୭ ॥

କାତର କଣ୍ଠରେ ସ୍ନେହେ ଉଷିଲେଣି ତରଣୀ
ତବ ଇପ୍‌ସିତ ମମ ରହୁଁ ନବ ତରୁଣୀ
ପତିର ସୋହାଗ ଲଭି ଲାଜେ ମାଥ ନାହିଁ ଉଠି
ବଢାଇ ନିଜ ପ୍ରେମ ଛଳ ଗାଢ ପ୍ରେମରେ
ଭରି ଉଠୁ ପ୍ରାଣ ନବ ଚୁମ୍ବରେ ॥ ୮ ॥

ବିରହ ବେଦନା କଥା ପ୍ରିୟ ପାଶେ କହି ଗୋ
ତତ ଯାଅ ଗାଢେ ପ୍ରେମାବେଶେ ସୁଧାମୟି ଗୋ
ସକଳ ବପଦ ସ୍ମୃତି ଲୀନ ସୁଖାଗମେ ସତି
ନୁହେ ଦୁଃଖ ଅବା ସୁଖ ଚିର ମରତରେ ଗୋ
ଋଲି ଯାଏ ସବୁ ତର ତରେ ଗୋ ॥ ୯ ॥

ବଢୀ ଦୁଷ୍ଟ ମଧୁପକୁ ଛାଡ ଦଅ ସତି ଗୋ
ପତି ପଦେ ସତୀ ପ୍ରାଣ, ଢାଣେନା କୁମତି ଗୋ
ନବୀନ ପୁଷ୍ପିତା ଅୟି ପ୍ରିୟ ପ୍ରେମେ ପ୍ରେମମୟୀ
ପ୍ରିୟ ଯାର ପାଶେ ତାର ମନ ନବ ନବ ଗୋ
ସ୍ମୃଜନର ଅତୁଳ ବୈଭବ ଗୋ ॥ ୧୦ ॥

ବସନ୍ତରେ ସତି ଉଦେ ତୁମ ମୁଖ ଶିରି ଗୋ
ପେଲବ ଗଣ୍ଡରେ ରବି ଚୁମ୍ବେ ଥରି ଥରି ଗୋ
ସରସୀର ଆଦରଣେ ବଦନ-ଶିରି-ସରସେ
ହୁଏ ପ୍ରତିବିମ୍ବ-ସ୍ପର୍ଶ ପ୍ରଭବ ପଦ୍ମିନୀ ଗୋ
ସରସୀର ଶୋଭା ନିସ୍ତାଳନି ଗୋ ॥ ୧୧ ॥



✱ ଖଡ଼ିଆଳ ସାହିତ୍ୟ ସମିତିର ପଞ୍ଚମ ଅଧିବେଶନ କାର୍ତ୍ତିକ ପୂର୍ଣ୍ଣିମା ଦିନ ତା: ୨୮।୧୧।୪୭ ରେ ପଠିତ ଓ ପୁରସ୍କୃତ (୨ୟ ସ୍ଥାନରେ) ।

## ଋତୁରାଜ

-ଶ୍ରୀ ପରମବ୍ରହ୍ମ ପଣ୍ଡା

ପଦାର୍ପଣ କରେ ଋତୁରାଜ ଧୀରେ
ବସନ୍ତ ଶୋଭଙ୍ଗୀ ଅଙ୍ଗେ
ବହଇ ସୁରମ୍ୟ ମଳୟ ପବନ
ସୁଷମା ସୁମନ ସଙ୍ଗେ ।୧।
ବସନ୍ତ ସୁ ଶୋଭ ମନ ମୁଗ୍ଧ ଲୋଭ
ପ୍ରୀତି-ଗୀତି-ପ୍ରଦାୟକ
କରେ ଶୋଭବନ ବନ କୁଞ୍ଜମାନ
ଜନ-ନୟନ ହାରକ ।୨।

ମନ୍ଦ ଗନ୍ଧ ବହ ରମ୍ୟ ଗନ୍ଧ ସହ
ଯେବେ ଉଦ୍ୟାନରେ ଚଳେ
ମାନସ ମୋହନ ସୁନ୍ଦର ସୁମନ
ଫୁଟେ ବୃକ୍ଷ ଅନ୍ତରାଳେ । ୩ ।
ମଳୟ ପରଶେ କୁସୁମ ବଳଶେ
ହୁଏ ଦ୍ରୁମ ପଲ୍ଲବିତ
ସପଲ୍ଲବ ପୃଷ୍ଠେ ଜଡ଼ିତ ପକ୍ଷୀଏ
ଗାଆନ୍ତି ନବୀନ ଗୀତ । ୪ ।
ବନଚର ଗଣେ କ୍ରୀଡ଼ନ୍ତି ବିପିନେ
ନ ଥାଏ ମାନସ ଖେଦ
ଉଲ୍ଲସିତ ମନେ କୁସୁମିତ ବନେ
ପାଇ ରମ୍ୟ ପୁଷ୍ପ ଗନ୍ଧ । ୫ ।
ଯେବେ ପ୍ରଭାତର ଶୀତଳ ଶୀକର
ଅରୁଣ କିରଣ ଲଭି
ଯେ ଛବି ପ୍ରକଟେ ବର୍ଣ୍ଣର ଲଲାଟେ
ବର୍ଣ୍ଣିନ ପାରଇ କବି । ୬ ।
ନାନା ଅଳଙ୍କାରେ ନାନା ପ୍ରକାରରେ
ସାଜଇ ପ୍ରକୃତି ରାଣୀ
ଏ ବିଶ୍ୱ ବାସୀଙ୍କୁ ସାଦରେ ଦେବାକୁ
ପ୍ରକୃତି-ସୌନ୍ଦର୍ଯ୍ୟ ଖଣି । ୭ ।
ଏ କାଳେ ସମସ୍ତେ ଲଭନ୍ତି ମାନସେ
ସୁଖ ପ୍ରୀତି ଅତିଶୟ

ଏହି ପୁଣ୍ୟ ପଦ ଉତ୍ସବ ବିବାଦ
ବଢ଼ାଏ ଆନନ୍ଦ ଚୟ । ୮ ।

ମନ୍ଦର ସମ୍ମୁଖେ ରାଧାକୃଷ୍ଣ ମୁଖେ
ହୁଏ ଅବିର ଲେପନ
ଦିଗନ୍ତ କଂପିତ ଗୀତି ବାଦ୍ୟ ନୃତ୍ୟେ
ଚଳେ ଠାକୁର ମେଳଣ । ୯ ।

ଅବିର ରଞ୍ଜିତ ନତମୁଣ୍ଡ ଶତ
କରଇ କି ଉଦ୍ଘାଟିତ
ନିରଶାର ଆଶା ଜାଗଇ ସହସା
ଶୁଣି ଭକ୍ତି ଭକ୍ତ ଗୀତ । ୧୦ ।

ସୁଧା ମକରନ୍ଦେ ମଧୁ ମୃଦୁ ଗନ୍ଧେ
ବମୁଗ୍ଧ ବସନ୍ତ ହେତୁ
ଯେ ସୁଷମା ଇନ୍ଦ୍ର ବମୋହିତ କବି
ନାମ ଦେଲେ ରଜା-ଋତୁ । ୧୧ ।

ଦାସତ୍ୱ ଶୃଙ୍ଖଳ କରିଲା କବଳ
ବହି ଶତାବ୍ଦୀର ତଳେ
ତୁମ୍ଭ ମହୋତ୍ସବେ ଶୁଣି ନା ମୁଁ କେବେ
ମଳୟାନିଳ ହିଲ୍ଲୋଳେ । ୧୨ ।

ଆହେ ଋତୁରଜ ପାଇଅଛୁ ଆଜ
ଜନ୍ମଭୂମି ସ୍ୱାଧୀନତା
ନବ ଉଷାକାଶେ ମୋ ମନ ଝରକେ
ଜଗିଅଛି ଜାତୀୟତା । ୧୩ ।

ଆସ ବେଗେ ଆଜ ଶ୍ଳାଘ୍ୟ ଋତୁରଜ
ବହାଅ ମଳୟାନିଳ
ତପ୍ତ ପ୍ରାଣ ମୋର ବହୁଲିତ କର
ଢାଳି ମରୁତ ହିଲ୍ଲୋଳ ।୧୪।
ଗରବ ନ କରି ସରବେ ବତରି
ଛାଡ ଭେଦ ଭବ ଜ୍ଞାନ
ଦେଶେ ଆଣ ମମ ଅହିଂସା ଧରମ
ସୁ ଶୋଭିତ କରି ଧାମ ।୧୫।
ହେ ପ୍ରିୟ ବସନ୍ତ ଶିଖାଅ ଦ୍ରବିତ
ଶାନ୍ତ ସାମ୍ୟ ଭବ ମତେ
ତବ ଦୀକ୍ଷା ବଳେ ବିତରିବି ହେଲେ
ଶାନ୍ତ-ମହିମା ଜଗତେ ।୧୬।



## ସ୍ୱପ୍ନ ସୁନ୍ଦରୀ

— ଶ୍ରୀ ସଦାନନ୍ଦ ତ୍ରିପାଠୀ

ସ୍ୱପ୍ନ
ସେତ ସରଗ ସମ୍ପଦ, ସଂସାର ମାନବ ପ୍ରାଣେ ସ୍ୱରଣ ସୁବର୍ଣ୍ଣ
ଏକ କୋଣେ ଫୁଟେ ଯାର ହାସ୍ୟ ଅନ୍ୟ କୋଣେ ଶୁଣାଏ କ୍ରନ୍ଦନ ।

ଗଢ଼େ ଭାଙ୍ଗେ ସାମ୍ରାଜ୍ୟ ଶାସନ ଚଳାଏ ସେ ବିପ୍ଳବ ପାବକ
ଦେଶେ ତୋଳେ ଲେଲିହାନ ଶିଖା ବଚେ ତାଜ ଗଢ଼େ କୋଣାରକ ।

ରାଜପୁତ୍ରେ କରଏ ସନ୍ୟାସୀ ରାଜରାଣୀ ହୁଏ ସନ୍ୟାସିନୀ
ରାଜା କରେ ଭିକ୍ଷା ଝୁଲି ଦେଇ ଦେଖାଏ ସେ ଅମୃତ ସରଣୀ ।

କର୍ମବୀର ତା ମଧୁର ସ୍ପର୍ଶେ ଗଢ଼େ ପୁରୀ ତୋଳେ ବାରବାଟୀ
ବିପ୍ଳବୀ ତା ମଧୁର ପରଶେ ସ୍ୱାଧୀନତା ପାଇଁ ଦିଏ ତୋଟି ।

ଫାଶୀ କାଠ କରେ ସେ ଆହ୍ୱାନ କଳାପାଣି ଡାକେ ତାକୁ ଦୂରେ
ପରାଧୀନ ଦାସତ୍ୱ ପରଶେ ଫିଟାଏ ସେ ମୁକ୍ତ ନବ ଦ୍ୱାରେ ।

ପ୍ରେମିକକୁ ଆଲେକ ଦେଖାଇ ଅପଥକୁ କରଏ ସେ ପଥ
ପ୍ରେମୀକାର ପଲକ ପରଶେ ପ୍ରେମିକର ପୂର୍ଣ୍ଣ ମନୋରଥ ।

କିଏ ଅବା ତାର କୁହୁକରେ ପାଇ ନବ ଅଭିନବ ବଳ
ବାର ବିଳାସିନୀ ବାସେ କାଟେ ତାର ଜୀବନ ସଂସାର ।

ଯାର ଛାୟାବାଜି ମରୁମୟ ସାହାରରେ ନନ୍ଦନ କାନନ
ପ୍ରକୃତି ହୁଅଇ ଦାସ ଯା'ର ବଳେ ମାନବ ଚରଣ ।

ଛାୟା ଚିତ୍ର ସମ କେବେ ସେହି ଘୁମାୟିତ ମାନବ ମାନସେ
ପୁର ପାକି ବେନି ସହ୍ର ଆସି ନବ ସୃଷ୍ଟି ଜଗତେ ବିକାଶେ ।

ଧନ୍ୟ ତୁହି ସପନ ସୁନ୍ଦରୀ ଅତୁଳ ତୋ ସାମର୍ଥ୍ୟ ଜଗତେ
ବହୁ ତୋର ଜୀବନ ଜାହ୍ନବୀ ନରଲୋକେ ଦେଶକାଳ ପାତ୍ରେ ।

ସପନର ଫୁଟୁ ବାସ୍ତବତା ଅନ୍ଧକାରୁ ଫୁଟୁ ଉଷା ଲୋକ
ସତ୍ୟ ଶିବ ସୁନ୍ଦର ବିକାଶେ ସ୍ୱପ୍ନ ତୁ ତ ସ୍ୱରଗ ମୟୂଖ ।



# ✱ ମାତୃଭୂମି ✱

– ଶ୍ରୀ ଅଭିନ୍ନ ଚନ୍ଦ୍ର ପାଢୀ

ପ୍ରବାସେ ପ୍ରବାସୀ ହୋଇ ମୋଦର ବର୍ଜ୍ଜିତ
ଅଶାନ୍ତ ଅନଳେ ଦଗ୍ଧ କ୍ଳାନ୍ତ ଏ ଜୀବନ
ବିଷର୍ଣ୍ଣ ବଦନ ମମ ବିଦୀର୍ଣ୍ଣ-ହୃଦୟ
ଅବଶ ଏ ଅବୟବ ଅଥୟ ଏ ମନ
କ୍ଷୋଭ ଖେଦ ଚିନ୍ତା-ଅଗ୍ନି ଜଳଇ ଅନ୍ତରେ
ଶାନ୍ତ ମନ୍ଦାକିନୀ ଧାର ନ ଲଭି ପରଶେ
ତପ୍ତମରୁ ପାଲଟିଲ ପ୍ରଶାନ୍ତ ହୃଦୟ ।

ସ୍ୱଦେଶେ

ତପତ ହୃଦୟମରୁ ନୀରଜ ଛୁଟି ଗଲା
ଚରଣାନ୍ତ ପ୍ରଦାୟିନୀ ମନ୍ଦାକିନୀ ଧାର
ପ୍ରସନ୍ନତା ମୁଖେ ମମ ହେଲା ପରିଦୃଷ୍ଟ
କ୍ଳିଷ୍ଟ ହୃଦେ ସରସତା ହେଲା ସଞ୍ଚାରିତ
ତାଳବନ୍ତକର ପୂର୍ଣ୍ଣ ନିଶାକର କର
ସୁବାସିତ ସ୍ୱଚ୍ଛ ଅମ୍ବୁ ମଳୟ ପରଶେ
ନିଷ୍ପ୍ରଭ ନିର୍ଜ୍ଜୀବ ସମ ଏ ଜୀବନ ତରୁ
ହୋଇଲା ସଜୀବ ପୁଣି ସତେଜ ସରସ
ମୋ ଖେଦ ରଜନୀ ପ୍ରଭତିଲା ଦେଖୁଁ ଦେଖୁଁ
ବେଦନା ବାଦଲ ସମ ବଦନ ଗଗନୁଁ
ଶନୈଃ ଶନୈଃ ବିଦୂରିତ ହୁଅନ୍ତେ ତକ୍ଷଣେ

ମହା ପୁଣ୍ୟ ସୌଖ୍ୟ ଶଶି ହୋଇ ସମୁଦିତ
ମଳନତା ବକ୍ଷଣ୍ଡତା କରି ବିଭୂଷିତ
ଉଜ୍ଜଳ୍ ଉଜ୍ଜଳତର କରି ଦେଲା ସତେ



## * ଋତୁରାଜ *

— ଉଦୟକର ମେଠ

ଠୁର୍ ଠୁରିଆ ଶୀତ ଟିକେ ଟିକେ ଅଚ୍ଛେଇ ହେଉଛେ
ଘୁଆଲ୍ ଗଦା ହୁଏ ଲୁଠି ବଷ୍ ଲାଗୁଛେ । ୧ ।
କୁହୁଡ଼ କବାଟ୍ କନେ ଥାଇ ଦେଖେଁ ଭୁଙ୍ଗି ଭୁଙ୍ଗି
(ଯେନ୍ତା) ବାଳୁତ୍ ଘରଆଣୀ ଖିଡ଼ଯଇ ମରେ ଦେଖି ଯୁଆନ ସଙ୍ଗୀ ।
ଯେନ୍ତା ସୁକୁର୍ ସୁକୁର୍ କାଢ୍ କାଢ଼ ଛାଡ଼ବି ମାଏଝି ଫିରେ
ରଢ଼ା ଯେନ୍ତା ଭିତ୍ଲା ଗଇଜ୍ ଛାଡ଼ ଦେଲେ ମରେ ।
ଘଁଟି ଯେନ୍ତା ଗୁର୍ ଠେକି ନେଲେ ଖୁଜି ଖୁଜି ମରେ ।
ଶିଶିର୍ ରନି ଦିନ୍ କାଢ୍ ଜାନି କୁଡ଼୍କୁରନୁ ଫିରେ । ୩ ।
ବିଧୁର୍ ଗାରକେ ଡେଗିଛେ କିଏ ଜଡ଼ି କରି ମୁଇଁ
ଆଖିର୍ ପାଏନ୍ ପତରେ ପକାଇ ଶୀତ୍ ରନି ଯାଏ ମେଲାନି ନେଇ । ୪ ।

ଭୁଚି କରି କରି ପଏସା କଉଡ ଢମେଇ ଦେଲେ ଥୁଡେ
ପିଲାଠୁଁ ବୁଢା ନୁଆ ଦରବ୍ ପିନ୍ଧସନ୍ ଗୁଡେ ମୁଁଡେ । ୫ ।

(ସେନ୍ତା) ଫୁଲ୍‌ଫୁଲିଅ ପବନ ପାଇ ଯେତେ ଗଛ ଗୁଛା
ଫୁନ୍ଦା ପତର ପକେଇ ଦେଇ ଦେହ କର୍‌ସନ ପର୍ଛା । ୬ ।

ପତର୍ ବାଗିର୍ କେତେ ଛାଟର୍ ନୁଆ ଅଲଙ୍କାର ସାଜି
ଗୁର୍‌ହା ଗୁର୍‌ହି ହୋଇ ମଜା କରସନ୍ ଈଶ୍ୱର ପ୍ରେମେ ମଜି । ୭ ।

ଖରର୍ ଶୋଷ ବରଷାର୍ ରୋଷ୍ ଶୀତର କାଡ ଭୁଲ
କିସାନ୍ ଭଇ କାମ୍ ଉପରେ ମାରୁଥାଏ ଟହଲି । ୮ ।

ହଲଦି ବସନ୍ତର୍ ଆମ ଡାଲ୍‌ଥିଁ କୋ-କୋ ଶୁନି
ଧଙ୍ଗ୍‌ରା ଧାଙ୍ଗ୍‌ରୀ ପେରମର୍ ଫୁରେ ହୋଇ ଥାଆନ ବାୟାନି । ୯ ।

ପଶୁ ପକ୍ଷୀ ଧୀରେ ଧୀରେ ଖରାର୍ ତେଜ୍ ଦେଖି
ପାଏନ୍ ଢାଡୁଁ ବଅଲୁଁ ଦେକି ହେସନ୍ ମହାସୁଖୀ । ୧୦ ।

ଜଙ୍ଗଲ ରାନିର୍ ଫୁଲର୍ ବେଣୀ ଦେଖି ଭଅଁର ଚଲେ
ଯେନ୍ତା ବେଶ୍ୟା ଦେଖି ଲଫଙ୍ଗା ଲୋକର୍ ଲାଲ ଥପ୍ ଥପ୍ ଗଲେ । ୧୧ ।
ଦପ ଦପ ବେଲ୍ ଦୁର୍ ଦୁରାନ୍ତୁ ମେଳା ଆକାଶ ତଲେ
ପିଲା ଟୁକେଲ୍ ଧଙ୍ଗ୍‌ରା ଧାଙ୍ଗ୍‌ରୀ ଢଡଥାଏ ଲାଡେ ଗେଲେ । ୧୨ ।
ଦପ୍ ଦପାନୁ ଫୁଲ୍ ଫୁଟେ, କିଲ୍ କିଲାନୁ ଚରେ ଚର୍‌ଗୁନ୍ ଫିରେ
ଇନ୍ଦ୍ରାବକ୍ରମେ ଷରଗ୍ ମଞ୍ଚ୍ ସାଜ ମଢଲସରେ ଫୁରେ । ୧୩ ।
ଏନ୍ତା ଦିନ୍‌କେ ଲୋକମାନେ କହେସନ୍ "ଋତୁରାଜ୍"
ବିଷର୍ କର୍‌ବେ ଆପନ୍‌ମାନେ ମୋର ନାହିଁନା କିଛି କାଜ୍ । ୧୪ ।

* * *

* ଖଡଆଳ ସାହିତ୍ୟ ସମିତିରେ ତା: ୧୬-୮-୪୭ରେ ପଠିତ ।

# ସ୍ୱର୍ଗୀୟ - ରୁଦ୍ରମାଧବ ଦେଓଙ୍କ ପ୍ରୟାଣ ଉପଲକ୍ଷେ

(ଯତିର ନିୟମ-ଛଅକ୍ଷର, ଛଅକ୍ଷର, ଆଠ ଅକ୍ଷର)

ଶ୍ରୀ କୈଲସ ଚନ୍ଦ୍ର ଦଣ୍ଡସେନା

ହେ ରୁଦ୍ରମାଧବ    ଖଡଆଳ କବ
ସମିତିର ସଞ୍ଚାଳକ ହେ,
ଏକାନ୍ତେ ଆପଣେ    ଗଲ ଚାଲି କେଣେ
ଆମ୍ଭଙ୍କୁ କରି ନିରକ୍ଷ ହେ ।୧।
ଏ ଗତ୍ୟୋ ଅବଶ୍ୟ    ନୁହେଁ ନୂଆ କଥା
କବ ସାହିତ୍ୟ ସମିତି ହେ
କିନ୍ତୁ ଜୀର୍ଣ୍ଣେ ପଡ    ଥିଲା ତାକୁ ଗଢ
ରଖି ଦେଇଗଲ କୀର୍ତ୍ତି ହେ ।୨।
ତୁମରି ଉତ୍ସାହେ    ସମିତି ଉତ୍ସାହ
ବଢୁଥିଲା ଦିନୁଁ ଦିନ ହେ
ହରାଇ ତୁମ୍ଭଙ୍କୁ    ନିରୁତ୍ସାହେ ଅଛି
ଯଥା ଜଳ ହୀନ ମୀନ ହେ ।୩।
ଅକାଳେ ଆମ୍ଭଙ୍କୁ    ଛାଡିଯିବ ବୋଲି
ନ ଥିଲା କାହାକୁ ଜଣା ହେ
ଦରଖିଆ କରି    ଦେଇଗଲ ଚାଲି
କାବ୍ୟ ରସାମୃତ ପଣା ହେ ।୪।
ଯେଉଁ ଦିନୁ ଗଲ    ଆଉ ନ ଫେରିଲ
ଯୋଗୀ ସନ୍ନ୍ୟାସୀଙ୍କ ପରି ହେ

ଗୃହ ବାସ ଛାଡ଼ ଖଡିଆଳ ରେତେ
ପିତୃପଥ ଅନୁସରି ହେ । ୫ ।
ଅଇଲା ନିର୍ଜୀବ ଶରୀର ସହିଁଣ
କଲୁଁ ସର୍ବେ ହାୟ ହାୟ ହେ
ସୁନ୍ଦର ନଦୀର ତଟରେ ନେଇଣ
କର ହେଲା ଶବ ଦାହ ହେ । ୬ ।
ତୁମ୍ଭ ବାପ ଅଜା ଘର ଦ୍ୱାର ତେଜ୍ୟ
କରି ବିଦେଶ ପ୍ରୟାଣ ହେ
କଲେ ବୋଲି ସବ ଘେନି ସତ୍ୟ ସନ୍ଦ
ରଖିଲ ସେହି ପ୍ରମାଣ ହେ । ୭ ।
ଯେଉଁମାନଙ୍କର ନେତୃତ୍ୱ ଓଡ଼ିଶା
ମଧ୍ୟ ପ୍ରାନ୍ତ ଅନାବିଲ ହେ
କରୁଥିଲା ଏହି ସାହିତ୍ୟ କାନନୁଁ
ବହି ମଳୟଜାନିଳ ହେ । ୮ ।
ସେ ପଥାନୁସରି ଗଲ ଚିନା ଯ୍ଥଳ
ହୋଇଲୁଁ ଆମ୍ଭେ ଅନାଥ ହେ
ଅଛି କେ ସାହସୀ ଚଳାଇବ ତବ
ମାରଣ ଉଦ୍ଧାମେ କାତ । ୯ ।
ଚଉଦିଗେ ଦୃଷ୍ଟି- କୋଣ ପଡୁଥିଲା
ବହୁଳ ଶିକ୍ଷାର ପାଇଁ ହେ
ହୋଇଥିଲ ରହି ଆର୍ତ୍ତତ୍ରାଣ ହାଇ-
ଇସ୍କୁଲର ଭରଗାହୀ ହେ । ୧୦ ।
ସେହି ଆର୍ତ୍ତ'ତ୍ରାଣ ଦରବାର ଦିନେ
ବସୁଥିଲେ ତିନି ମୂର୍ତ୍ତି ହେ

ଦିଶି ଯାଉଥିଲ          ପ୍ରକୃତରେ ଧରି
ସ୍ୱୟମ୍ଭୁଙ୍କ ପରି ଦ୍ୟୁତି ହେ । ୧୧ ।
ତୁମ୍ଭଙ୍କୁ ହରାଇ          କାନ୍ଦଇ ସମିତି
କାନ୍ଦନ୍ତି ଶିକ୍ଷକ ଗଣେ ହେ
ଛାତ୍ର ଛାତ୍ରୀ ଶୋକ          ଅତି ଅତିରେକ
ଆଘାତ ବାଜଇ ପ୍ରାଣେ ହେ । ୧୨ ।
ଦେଶ ପ୍ରତିନିଧି          ରୂପେ ମଧ୍ୟ ଦେଶେ
ନ ଥିଲା ଊଣା ଆଦର ହେ
ତୁମ୍ଭ ଗଲା ଦିନୁଁ          କହୁଛନ୍ତି ଲୋକେ
ଗଲା ବୋଲି ଖଡିଆର ହେ । ୧୩ ।
ତୁମରି ଗହଣେ          ଦିନେ ଏ ସମିତି
ଦେଶେ ପକାଉଛି ଛୁରି ହେ
ଅଛିଦ୍ରା କାଳର          ମସିହା ରୁନ୍ଧିଲ
ନୁହଇ କି ବାହାଦୁରି ହେ । ୧୪ ।
ସୁନ୍ଦର ଉଜ୍ଜଳ          ମୂର୍ତ୍ତି ସଉଷ୍ଠବ
ଗଉର ବରନ କାନ୍ତି ହେ
ଆଜାନୁ ଲମ୍ବିତ          ଥିଲା ଭୁଜବେନି
ବିଶାଳ ବିସ୍ତୀର୍ଣ୍ଣ ଛାତି ହେ । ୧୫ ।
ରୂପେ ଗୁଣେ ଥିଲ          ତୁମ୍ଭେ ସମସରି
ଦୀର୍ଘ କାଳ ତୁଙ୍ଗ ମଥା ହେ
ଅରି ତରି ଧରି          ଘୁଞ୍ଚି ଯାଉଥିଲା
ଶୁଣି ସେ ଗମ୍ଭୀର କଥା ହେ । ୧୬ ।
କରି ନ ଥିଲେ ହେଁ          ବେଶୀ ଲେଖା ଲେଖି
ଏ ଖଡିଆଳ କୁସୁମ ହେ

ଉଜ୍ଜଳ ବାହୀଙ୍କି ଦେଉଛି ଚେତାଇ
ସଉଜନ୍ୟ ଶୀଳ ଗୁଣ ହେ । ୧୭ ।
କେଣେ ଗଲ ସଖା ନ ଦେଲ ତ ଦେଖା
ମନୁଅଛୁଁ ଗୁଣ ଗୁଣି ହେ
ଚକେଇଣ ନିତି କାନ୍ଦଇ ଏମିତି
କରିଗଲ ଭୋଳ ଋଣୀ ହେ । ୧୮ ।

**

## ସ୍ୱପ୍ନ ସୁନ୍ଦରୀ

ବଶ୍ୱନାଥ ପାଇକରାୟ

ନିଦ୍ରାଦେବୀର କୋଳ ଆଶ୍ରଇ ଯେବେ ନର
ସପନରାଣୀ ! ସୃଜୁ ସୁଖ ଦୁଃଖ ସୁନ୍ଦର ।
କରମ କ୍ଳାନ୍ତ ଦେହ ବଳା ଧାନର ପାଇଁ
ଘୋର ନିଶୀଥେ ନର ପଡଇ ଶେଯେ ଯାଇ ।
ଅଚଳ ଅଙ୍ଗ ରଜ୍ଜ ଅବଶ ପ୍ରତି ଅଙ୍ଗ
କରନ୍ତି ଅନୁଭବ ତୋହର ସବୁ ରଙ୍ଗ ।
ମିଛକୁ ସତ ପୁଣି ସତକୁ ମିଛ କରି
ରଖୁ ମାନସ ପୁରେ ମାୟା ସ୍ୱପ୍ନ ସୁନ୍ଦରୀ ।
କେତେ ଯେ ଚିତ୍ର ରଙ୍ଗ ଛାୟା ବାଜିର ଶତ
ଗଢୁ ତୁ ପଲକରେ ଚଳଚିତ୍ର ଜଗତ ।
ହସାଉ କନ୍ଦାଉ ତା କ୍ଷଣକେ ବହୁଦୂରେ
ଭାଉ ତୁ ସ୍ୱପ୍ନରାଣୀ ମନର ମାୟା ପୁରେ ।

ଉତ୍ତୁଙ୍ଗ ଗିରିଶିଖୁ ଅଣୁ ସାଗର ତଳେ
ଉଡାଇ ଆକାଶେ ବା ଫିଙ୍ଗୁ ତୁ ରସାତଳେ ।
ସବୁଗ ନରକର କାନ୍ତ ବା ଭୀମ ଛବି
ନର ମନ ମନ୍ଦରେ ପାରଇ ଅନୁଭବ ।
ସୃଜୁ ନିର୍ଦ୍ଦିତ ନର ସୁଖ ବା ଦୁଃଖ ସୀମା
ଧନ୍ୟ ସ୍ୱପ୍ନ ସୁନ୍ଦରୀ ଧନ୍ୟ ତୋର ମହିମା ।

## ପରିବର୍ତ୍ତନଶୀଳ ଜଗତ

– ସ୍ୱର୍ଗତ ବୈକୁଣ୍ଠନାଥ ଦଣ୍ଡହେନା

ଶୂନ୍ୟ ଶୂନ୍ୟ ଏ ଥିଲାଟି ମହାଶୂନ୍ୟ ।
ଶୂନ୍ୟରୁଟି ପବନ ହୋଇଛି ଜନ୍ମ ॥
ପବନରୁ ନାଦ, ନାଦରୁ ଓଁକାର ।
ଓଁକାର ମୂଳ ବୀଜ ଅଟେ ସଂସାର ॥
ଅଣାକାର ପୁରୁଷ ଓଁକାରୁ ରୂପ ।
ଅନନ୍ତ ନାମ ତାଙ୍କ ଅଟେ ଅଲକ୍ଷ ॥
ବ୍ରହ୍ମା ବିଷ୍ଣୁ ଶିବ ହୋଇଲେ ତା ତହୁଁ ।
ସୃଷ୍ଟି ପାଳନ ଲୟ ରଚନେ ସେହୁ ॥
ଛପନ କୋଟି ଜୀବ କଲେକ ଜାତ ।
ଚଉରଶୀ ଯୋନିରେ କରି ଦୀପିତ ॥
ନାଗ ନର ଗନ୍ଧର୍ବ କିନ୍ନର ଯକ୍ଷ ।
ସୁର ଅସୁର ଆଦି ଚଉଦ ଲୋକ ॥

ସୁବର୍ଣ୍ଣେ ନାନା ବର୍ଣ୍ଣ ଯେସନ୍ତେଳଙ୍କାର ।
ଏକ ବ୍ରହ୍ମରୁ ଜାତ ଅଟେ ନିକର ॥
ଚନ୍ଦ୍ର ସୂର୍ଯ୍ୟ କିରଣ ସେ ଦିବାରାତି ।
ଚିର ଅନ୍ତର ବେନି ବର୍ଣ୍ଣରେ ଜ୍ୟୋତି ॥
ବରଷା ଗ୍ରୀଷ୍ମ ଶୀତ ଯେ ଆତଯାତ ।
ଚଳାଚଳ ଶୟଳ ସମସ୍ତ ଜୁତ ॥
ସତ୍ୟ ଦ୍ୱାପର ତ୍ରେତା କଳିଯୁଗକୁ ।
ଋଷି ପ୍ରକାରେ ଭେଗ କରୁଛି ବପୁ ॥
ଆଦ୍ୟ ଯୁଗରେ ତପବଳ ବିହିତ ।
ନିର୍ବିକାର ଅହିଂସା ସତ୍ୟରେ ରତ ॥
ଲକ୍ଷ ବରଷ ଆୟୁ ଅଲକ୍ଷ ବଳ ।
ବ୍ରହ୍ମରେ ଥାଇ ପ୍ରାଣ ଧର୍ମ ସମ୍ବଳ ॥
ଧର୍ମବୂ-ପାପ-ଭୟ ହୋଇଲେ କ୍ଷୟ ।
ଋଷି ଯୁଗକୁ ଏହା ହୋଇଛି ଥୟ ॥
ସତ୍ୟ ଯୁଗରେ ଦୈତ୍ୟେନ୍ଦ୍ର ହିରଣ୍ୟ ।
ଜାତ ଜଗତ ପାତ କଲା ତୁରଣ ॥
ନରସିଂହ ରୂପରେ ବୁକୁ ବିଦାରି ।
ବରାହ ରୂପେ ହିରଣାକ୍ଷକୁ ଚିରି ॥
ଦନ୍ତରେ ପୃଥ୍ୱୀ କି ସେ ଟେକିଲେ ହରି ।
ହରିଲେ ଦୈତ୍ୟବଳ ସମସ୍ତ ଶିରୀ ॥
ଦଶ ସହସ୍ର ବର୍ଷ ତ୍ରେତାରେ ଭେଗ ।
ଅସ୍ଥିରେ ଥାଇ ପ୍ରାଣ ଅଚଳ ଯୋଗ ॥
ମନ୍ତ୍ର ବଳରେ ଧନୁର୍ବିଦ୍ୟା ସୃଜନ ।

ପେଶିଲା ଶବ ଲେଉଟଇ ପୁଣ ॥
ଗିରି ବୃକ୍ଷକୁ ନେଇ ପିଟନ୍ତି ଏକେ ।
ଧରଣୀ ଧସିଯାଏ ବଳ ସମୁଖେ ॥
ମାଳ ଯୁଦ୍ଧରେ ବୀରେ ଅତି ପ୍ରଚଣ୍ଡ ।
କରିଣ ଦୀନ୍ତ କ୍ଷିତି ସେ ମସିଗୁଣ୍ଡ ॥
ରାବଣ ନାମେ ଥିଲା ବଶ୍ରବା ସୁତ ।
ମହା ପ୍ରତାପୀ ବଳବନ୍ତ ଗରିଷ୍ଠ ॥
ହରିଲା ରାମନାରୀ ସୀତାଙ୍କୁ ଯେଣୁ ।
ରାବଣେ ସଗୋତ୍ରରେ ମରିଲେ ତେଣୁ ॥
ଦ୍ୱାପରରେ ଦ୍ୱିପାଦ ସତ୍ୟ ବିଳସେ ।
ସହସ୍ର ବର୍ଷ ଆୟୁ ଧର୍ମ ବିଶେଷେ ॥
ରଥି ପଦାତି ଗଜ ଅଶ୍ୱରେ ରଣ ।
ମାଳବନ୍ଧ କମାଣେ ପେଷନ୍ତି ବାଣ ॥
ଅସୁର ବଳ ଦର୍ପ ହୋଇ ସବଳ ।
ନାଶିଲେ କେତେ ସେ ଭୁବନ ମଣ୍ଡଳ ॥
ଦନୁଜ ଦଳନରେ ହୋଇଲେ ଜାତ ।
କୃଷ୍ଣ ବଧିଲେ କଂସ କେଶୀ ଦଇତ ॥
କୁରୁବଳ ସଂହାରି ପାଣ୍ଡବ ହିତେ ।
ଜାଣଇ ସକଳ ସେ ଜଗତ ଯେତେ ॥
କଳି ଯୁଗରେ ବର୍ଷ ଶତ ବରଷ ।
ଧରମ ହୀନ ଯୋଗୁଁ ଅଳ୍ପ ଆୟୁଷ ॥
ଯନ୍ତ୍ର ଚାଳନେ ହେବେ ପ୍ରବୀଣ ନର ।
ଜାହାଜ ରେଳ ଆଦି ଚଳେ ମୋଟର ॥

ମିଶନ ଗଞ୍ଜ ଗୋଳା ତୋମା ବାରୁଦ ।
ସଂହାର କରନ୍ତି ସେ ନାହିଁ ବିଷାଦ ॥
ଦିନକୁ ଦିନ ଏହି ମତେ ଢଗନ୍ତେ ।
ଚିତ୍ର ଖେଳା ଲୀଳା କରେ ରୂପରେ ॥
ଥିଲେ କ୍ଷତ୍ରିୟ ବୀର ପ୍ରତାପୀ ରଜା ।
ଧର୍ମସ୍ତ ନର ପାଦେ କରନ୍ତି ପୂଜା ॥
ଭରତ ଯୋଗୁଁ ନାମ ହେଲା ଭରତ ।
ଶାସନ କରିଥିଲେ ହୋଇଣ କ୍ଷାନ୍ତ ॥
ଚାରି ଦିଗକୁ ଜୟ କରି ଥିବାରୁ ।
ଚତୁର୍ଭୁଜ ଚୌହ୍ୱାନ ନାମ ପ୍ରସରୁ ॥
ଥିଲେ ଦଲୀପ ଅଧୀଶ୍ୱର ସେ ହୋଇ ।
କିଛି କାଳ ରଜତ୍ୱ କଲେକ ତହିଁ ॥
ଯବନ ଜାତି ତହୁଁ ଭାରତେ ଆସି ।
ଘେନିଲେ କେତେ ରଜା ସଂଗ୍ରାମେ ପଶି ॥
ନିତି ଅନିତି ବଳ କରି ପ୍ରସାର ।
କଲେକ କେତେ ରଜା ସେ ଛୁରଛୁର ॥
ତହୁଁ ସେ ଗୋରା ତୋଷ ସୁଖେ ବହ୍ରି ।
ବ୍ୟବସାୟୀରେ ଆସିଥିଲେ ଏ ପୁରି ॥
କରିଣ ଛେଦ ଭେଦ ଅନେକ କୂଟ ।
ନେଲେ ସମସ୍ତ ରାଜା ଶିରୀ ମୁକୁଟ ॥
ଛଳ ବଳ କଳ କୌଶଳରେ ପୂର୍ଣ୍ଣ ।
ପାଲିସି ଜାଣଇ ସେ ଅନେକ ବର୍ଣ୍ଣ ॥
ଭରତ ମାତା ତହୁଁ ହୋଇ କୁପିତ ।
ବୋଇଲେ କେତେ ଶୋଉଅଛରେ ପୁତ ॥

ମହାତ୍ମାଗାନ୍ଧୀଙ୍କର ହୃଦରେ ବସି ।
ବାକ୍ୟଯୁଦ୍ଧ ପ୍ରାରମ୍ଭ କଲେକ ଆସି ।।
କେତେକ ଗୁଳୀ ଖଣ୍ଡା ନଢର ଖାନା ।
ସହିଲେ ମହାକଷ୍ଟ ହୋଇ ସୁମନା ।।
ଅନେକ ଦିନ ଏହି ପରାମର୍ଶରେ ।
ଘେନିଲେ ରାଜ୍ୟ ଡୋର ନିଜ ହସ୍ତରେ ।।
ଜାତ ଏ ଧରା ତଳେ ହୋଇ ସ୍ୱପୁତ୍ର ।
କଲେ ଭରତ ଯାକ ସର୍ବ ସ୍ୱତନ୍ତ୍ର ।।
ଆଜି ଜା ଦେଖୁ ଅଛି କାଲ ତା ନାହିଁ ।
ଦନ ମାସ ବରଷ ଯାଉଛି ବହି ।।
ପରିବର୍ତ୍ତନଶୀଳ ଏହି ଜଗତ ।
ଲେଖିବାକୁ କେ ଅବା ହେବ ସମର୍ଥ ।।

✱ଖଡଆଳ ସାହିତ୍ୟ ସମିତିର ତା: ୨୬-୧-୪୮ ଅଧିବେଶନରେ ପଠିତ ।

## ଜୀବନ ପ୍ରବାହ

–ସ୍ୱର୍ଗତ ଆନନ୍ଦ ମୋହନ ବାରିକ

ଜନନୀ ଗର୍ଭରୁ ତନୟ ଯେବେ ଜାତ ହୁଏ
ସେତ ଓଁ ବ୍ରହ୍ମପଦ ମନ୍ତ୍ରକୁ ମନେ ଧ୍ୟାୟେ
ଚନ୍ଦ୍ରଙ୍କ ପରି ବଢ଼ଇ ।
କର୍ମ ଜ୍ଞାନ କର୍ତ୍ତାଙ୍କ ସଙ୍ଗେ ଜୀବନ ଗତି ହୋଇ । ୧ ।
ଚଳନ୍ତି ଇଚ୍ଛା ପୋତକାର ନେକଷ୍ଟ ସାଗରେ

ନିପ୍ରା ଗତି ପଥେ ଜୀବନ ଗତି ଯେ ବେଗରେ
ସୁହିଁ ଶୁଷ୍କ ଲପନରେ ।
ଶୋକାର୍ଣ୍ଣବେ ପଡ଼ କେ ଗିର କହି ନ ପାରେ । ୨ ।
ହିରଣ୍ୟ ଜୀବନ କାର ଦୁଷ୍ଟ ବାତ୍ୟା ଦୁଃଖରେ
ଘନରେ ତପନ ଯେ ଲପନ ସେ ମଳିନରେ
ଜୀବନ ଗତିକାର ସାର ।
ସାର ରସା କାରେ ଗାଢ଼ ବୃଇପଦର । ୩ ।
ଳୁଣିଆ ନୀର ଅଟନୀର ଘନେ ମିଶେ ନରେ
ନିର୍ମଳରେ ନୀର ନଭ ପୁଣି ବରଷେ ଭବେ
ବିଷେ ଭରା ଜୀବ(ନ) କାର ।
ସାଧୁ ସଙ୍ଗେ ସିନ୍ଧୁ ପାର କରିଯାଏ ଉଭର । ୪ ।
କେହୁ ବନର କଣ୍ଟକ ପଥରେ ସ୍ଥଳେ ଚେଡ଼
ସେ ଜନ ଜୀବନ ନର୍କେ ବିପଦେ ଯାଏ ମଣ୍ଡୀ
ପ୍ରତିପାଦେ ନିତି କାଳ ।
ଧରି ଗୌରବେ ପକାଇବା ପାଇଁ ଇଚ୍ଛେ କାଳ । ୫ ।
ରଥ ସାରଥିର ସାର ପଥକୁ ନ ବୁଝଇ
ପାଣିର ଗାର ପ୍ରାଣ ଜୀବର କ୍ଷଣକର ପାଇ
ତରଙ୍ଗ ପରି ସମୟ ।
କାଳ ନାହିଁ କା'ରେ ଅପେକ୍ଷା କରେ ଆୟୁ କ୍ଷୟ । ୬।
ପୌରୁଷ ହୃଦୟ ସମ ମତି ଯାର ହେ ବୀର
ପରମ ତା ପଥ ସେହି ଜୀବନ ପରିଷ୍କାର
ବହ୍ନି ହିରଣ୍ୟ ଯେପରି ।
ଗୁପ୍ତ ପକ୍ଷୀ ଗୁଣରେ ବୁଳେ ତ୍ରିପୁରୀ ଗର୍ଭରୁ ବାହାରି ।୭।

  

ଶୂନ୍ୟରେ ଶୂନ୍ୟରେ ଦେଉଳ ଗୋଟି କେ ଗଢଛ
କେଉଁ ବିଜ୍ଞାଣୀ ଦେଉଳ ତୋୟ ଦେଇ ତୋଳନ୍ତି
ଜୀବ ପରମ ଚହିଁରେ ।
ସର୍ବ ଜୀବ ଜୀବ ପ୍ରବାହ ହୁଏ ମନ୍ଦରେ । ୮ ।
ସୁମନ ଦୁମନ ମନ ବିମନ ଜ୍ଞାନ ଶାନ୍ତ
ଗୋପଦ୍ୱାରେ ପଞ୍ଚ ମନ ପଚଶ ପ୍ରକୃତି
ବଧୂ ଇଅଁଳା ପିଅଁଳା ।
ବସିଛ ଷୋଳସସ୍ତ ଗୋପ ସଖି ସ୍ୱର୍ଗ ନଳା । ୯ ।
ରାଧାକୃଷ୍ଣ ସୁଧାଂସୁ ପୁସ୍ତ ଗଙ୍ଗା ଋଷି ବଟ
ବୃନ୍ଦାବତୀ ନାଡି ଓ ଋଷି ବେଦ ସବୁ ଯୋଟ
ସର୍ବ ଅଙ୍ଗ ମଙ୍ଗଡରେ ।
ଓଲଟ ତରୁରେ ପ୍ରବେଶି ଅଛ ମିଶି ନୀରେ । ୧୦ ।
ନିଟର ଜଳାଶୟରେ ପାରସ ବସା ଅଛି
ଲକ୍ଷେ ଚୂସ୍ତ ତନୟ ସାଥ ହରିଣୀ ରହିଛ
ବ୍ୟାଘ୍ର ଦିଅଇ ଘ୍ରତାନ୍ନ ।
ଜୀବନ ପ୍ରବାହ ଜୀବର ହର୍ଷେ ଋଳନ । ୧୧ ।
ଅଜ୍ଞାନରେ ମାୟାର୍ଣ୍ଣବେ କେହୁ ଅଛ ପଡ
ଜ୍ଞାନ ଥାଉ ଜ୍ଞାନ ଯାଉଛି ମାୟାରେ ବୁଡ
ତମ ମତ୍ତ ବାତ ।
ଅମ୍ବୁନିଧିରେ ପକାଇବା ପାଇଁ କିବା ମତ୍ତ । ୧୨।
କା (ର) ଷଟୁ ତରଣୀ ରଡ ଯେ ଅଗାଧ ଜଳରେ
ବାରିଧିର ବାରି ପଶୁଛି କାହାର ପୋତରେ
ରସାତଳରେ ଖସର ।
ଆହୁଲା ନ ପାଇ ବନଷ୍ଟ ଥରେ ସେ ସିନ୍ଧୁରେ । ୧୩ ।

ବର୍ଣ୍ଣାର ବାତେ ତରଣୀ ନୀରେ ସରିତେ ଘସେ
ଛିଦ୍ର ପାଇ କାଳ ପରାଣ ପୋତକୁ ନାଶେ
ରଜନୀ ଦବା ନ ଦଶେ ।
ଦଶ ଦିଶ ଶୂନ ତାପ ପଞ୍ଚ ତତ୍ତ୍ୱ ପଞ୍ଚ ମିଶେ । ୧୪ ।
ଧ୍ୟାୟି ଶ୍ରୀ ସୀତାକାନ୍ତ ପଦ ବାରିକାନନ ମୋହନ
ଚିତ୍ତବନ୍ଧେ ଥିବେ ଜୀବନ ପ୍ରବାହ ତତ୍ତ୍ୱ ଜ୍ଞାନ
ହେ ପ୍ରଭୁ ଜାନକୀରମଣ ।
ଅଘ ନାଶି କରୁଣା କରିବେ ହୋଇ ସୁ ପ୍ରସନ୍ନ । ୧୫ ।

---

## ପ୍ରଦୀପ

ଲେଖିକା – ଲଳିତା

କେଉଁ ଶୁଭଲଗ୍ନେ କିଏ ଅମୃତ-କଳ୍ପନା ଧରି
ପ୍ରଦୀପ ଜାଳିଲା ଘନ ଅନ୍ଧକାର ପରେ
ଯାର କଳ୍ପନା ପ୍ରସୂତେ
ବାସ୍ତବ ଜାଜ୍ଜ୍ୱଲ୍ୟ ନେତ୍ରେ
ମାନବ ପରାଣେ ଫୁଟେ ଜ୍ଞାନ-କର୍ମ-ସତ୍ତା
ସତ୍ୟ ଶିବ ସୁନ୍ଦରର ପ୍ରତୀକ ପ୍ରଦୀପ ଶିଖା
ନିବିଡ଼ ତମ ସଂସାର-ନଭେ ଧ୍ରୁବତାରା
କେଉଁ ଅସୀମ ଗରବୁ ସସୀମ ମାନବ ପ୍ରାଣେ
ଢାଳି ଅଛି ଢ଼ୁଳା
ପଶୁତ୍ୱର କରିଅଛି ଶେଷ... ... ...

ସୃଷ୍ଟି କୋଳେ ତୋଳଅଛ
ମାନବ କୀର୍ତ୍ତି ଅମର, ନିରସ, ସରସ । ୧ ।
ପ୍ରଦୀପ ତୋଳିଛ ଟେକ ସଭ୍ୟତା ସୌନ୍ଦର୍ଯ୍ୟ
ଅମୃତ ମାନବେ ଦେଇ ଅମୂଲ୍ୟ ବୈଦୂର୍ଯ୍ୟ
ଶୁଭଲଗ୍ନେ ଅଶୁଭକୁ ଠେଲି ଦେଇଦୂରେ
ରଚିଅଛି ନବସୃଷ୍ଟି ଅନ୍ତରେ ବାହାରେ
ଦେଇଅଛି ନବପ୍ରାଣ ତୋଳି ନବଗାନ
ମରକୁ ଅମର କରି
ସରକୁ ସରଗ ଧରି
ଯୁଗେ ଯୁଗେ ଦେଶକାଳ ପାତ୍ରେ ନୁହେଁ ଭିନ୍ନ
ଧନ୍ୟରେ ପ୍ରଦୀପ ଧନ୍ୟ ତୋ ଅମୃତ ପ୍ରାଣ । ୨ ।
ପ୍ରଦୀପ ଢାଳିଛ ପ୍ରାଣ ପ୍ରେୟସୀ ପରଶେ
ତ୍ୟାଗ ତୈଳେ ଗଢ଼ିଅଛି ଅମୃତ ଜୀବନେ
ଅପଥକୁ ପଥକରି ବାହିଅଛି ରଥ
ଅପଥରୁ ଦେଖାଇଛ ଅପରୂପ ପଥ
ଉର୍ଦ୍ଧ୍ବ ବକ୍ଷାସିନୀ ପ୍ରାଣେ କନକ କଳ୍ପନା
ତୋଳଅଛ ଗୃହେ ବନେ ପବିତ୍ର ସାୟାହ୍ନେ
ଗୋଟିକରୁ କୋଟିଏର
କୁଟୀରୁ ପ୍ରାସା ଚୂଳ
ଶାଶ୍ୱତ ମଙ୍ଗଳ ପ୍ରାଣେ ଦେଇଅଛ ଭରି
ହିନ୍ଦୁର ରମଣୀ ନୁହେଁ ବିଶ୍ୱମାତା ନାରୀ । ୩ ।
ଏ ପ୍ରଦୀପ ଉଡାଇଛି ଦେଶେ ବୈଜୟନ୍ତୀ
ଦେଇ ଅସୀମ ସାହାସ ବାହି ନବ ଯାତ୍ରୀ

ଅକୂପାର ସେ ପାରକୁ ଡାକିଅଛି ବୀରେ
ସୁନାର ବୋଇତ କେତେ ଭସାଇ କଲ୍ଲୋଳେ
ଗଢ଼ ଅଛ ତାଙ୍କ ଅର୍କ ବିସ୍ତାରି ସାମ୍ରାଜ୍ୟ
ପ୍ରସ୍ତରିଛି କର୍ମବାଣୀ ମାନବ ସୌନ୍ଦର୍ଯ୍ୟ
ଶିଖାଇଛି ଭେଦଗଣା
ଦେଖାଇଛି ଗଜ୍ୟଭିଣା
ହିଂସା ପ୍ରଶୋଷିତ ତରବାରୀ (ଯହିଁ) ମାରେ ଦ୍ୱାର
ପ୍ରେମର ପ୍ରଦୀପ ସେଠି ତୋଳେ ଗମକାଳ । ୪ ।
ଧନ୍ୟରେ ପ୍ରଦୀପ ଧନ୍ୟ ଅସୀମ ଶକତି
ଭୂ ଉରତେ ଉଡ଼ୁ ତୋର ଆଲୋକେ ବୈଜନ୍ତୀ
ଅନ୍ଧକାର ଯାଉ ଦୂରେ
ଆସୁ ନବାଲୋକ ଧରେ
ଦେଖାଉ ଉରତ ପୂର୍ବ ଭରତ ଶକତି
ତ୍ୟାଗ ସତ୍ୟ ଅହିଂସାର ଉଡ଼ୁ ବୈଜୟନ୍ତୀ
ଅସ୍ତମୀତ ପରତୀ ପ୍ରାଙ୍ଗଣେ
ଦେଖୁ ପ୍ରାଚୀ ଧ୍ରୁବତାର-ଉରତ-ଭୁବନେ
ସୁରପୁରୁ ଦେବ କନ୍ୟାଗଣ
ପ୍ରଦୀପ ତୋରଣ କରେ
ବଢାଅନ୍ତୁ ଯୁଗ ପ୍ରାତେଃ ଭନ
ଫୁଟୁ ମୁଖେ ନବ ଜ୍ୟୋତି ରେଖା
ଗମଗଜ୍ୟ ଆସୁ ଉବେ
'ପ୍ରଦୀପ' ତୁ ଟେକ ତୋର ଶିଖା । ୫ ।

ଖଣ୍ଡଆଳ ସାହିତ୍ୟ ସମିତିର ୪ର୍ଥ ଅଧିବେଶନରେ ପଠିତ
ତା ୧୮ । ୧୦ । ୪୭ ଦିନ ।

# ପ୍ରଦୀପ

ଲେଖକ — ବନଫୁଲ

ଉତ୍କଳବାଳା ଜାଳେ ଯେ ପ୍ରଦୀପ
ମୁକ୍ତ ସରଳ ମନେ
କାହାର ଆଦେଶେ କେଉଁ ଉପଦେଶେ
ଜାଳେ ଏ ପୂର୍ଣ୍ଣିମା ଦିନେ ?
ପ୍ରିୟେ ଶଂସୟ ଫିଟାଇ କହ
କାର୍ତ୍ତିକ ପ୍ରଦୀପ ଉଜ୍ଜଳ ପ୍ରାଙ୍ଗଣେ ଆଣେ କି ମଙ୍ଗଳ କୋହ । ୧ ।

ଶୁଣିଥିଲି ଥରେ ମା'ଠାରୁ ଦିନେ
ସାଧବ ବଦେଶ ଯାତ୍ରା
ଲକ୍ଷ ବୋଇତ ବାହିଥିଲେ ସେଥୁ
ଅଜଣା ଆଜ ସେ କଥା
ବଙ୍ଗୋପସାଗର ବକ୍ଷ —
ମଣ୍ଡିତ କରି ବୋଇତ ଚଳଏ, ପୂର୍ଣ୍ଣତା ତାର ଲକ୍ଷ୍ୟ । ୨ ।

ଊର୍ମି ବକ୍ଷୋଭିତ ମହୋଦଧି ବକ୍ଷ
ଶାନ୍ତ ମୂରତି ଧରେ
ଘୋର ବରଷାର ରୁଦ୍ର ମୂରତି
ଆତଙ୍କ ନ ଦିଏ ତା'ରେ
ଅନୁକୂଳ ବାତ୍ୟା ବହି
ସଧୀରେ ବୋଇତ ସୁନୀଳ ସାଗରେ ସୁଦୂରେ ନିଏ ଉଷାଇ । ୩ ।

ତେଣୁ ଏ ପୂର୍ଣ୍ଣିମୀ ବିଦାୟ ଯାମିନୀ
ପ୍ରେମ ମନ୍ଦାକିନୀ ରୂପ

ଉତ୍କଳବାଳା ଅନୁକୂଳ ବାତେ
ଲଗାଇ ଆକାଶେ ଦୀପ
ଉତ୍କଳ ଗଗନ ଶଶି
ସହସ୍ର ବଦନେ ଉଭେଇ ଯାଆନ୍ତି ଶୁଭ ଆଶିଷ ବରଷି । ୪ ।

ଏହି ପ୍ରିୟ ସେହି ବୋଇତ ବହାଣ
ସୂଚନା ଦଏ ଆଣି
ସେ ଦିନ ଫେରିଲା ଉତ୍କଳ ବାଳା
ତା ପ୍ରିୟେ ଦେଇ ମେଲାଣି
ତାର ଉତ୍ଫୁଲ୍ଲ ଝଗପ୍ରାଣ
ଗୋପନ ବରହେ ଭଙ୍ଗ ପଡୁଥିଲା ସରସ କୋମଳ ମନ । ୫ ।
ଉତ୍କଳର ଇତି ଗୌରବମୟ
ସ୍ମୃତି ଏ ପ୍ରଦୀପ ପ୍ରିୟ
ଉତ୍କଳ ବୀର ସ୍ୱାଗତ କରେ
ଆନନ୍ଦେ ଜଳାଉ ଦିଅ
ଏହି ଜାତିର ମୁକତି ଶିଖା
ଦେଉ ପ୍ରେରଣା ଶକ୍ତି ସାହସ ବୀରତ୍ୱର ଗୁରୁଦୀକ୍ଷା । ୬ ।

ଯଶସ୍ୱିନୀ ମାତା ବୀର ପ୍ରସବନୀ
ଆତ୍ତରେ ଆକୁଳ ପ୍ରାଣେ
ଆର୍ଦ୍ର ନୟନେ ଗହେଁ ସ୍ୱର୍ଗ ପଥେ
ଝାଉଁଳା ଉଦାସ ମନେ
ଜାଳ ଏ ପ୍ରଦୀପ ରତ୍ନ
ମାଗେ ଆଶିଷ, ତାକୁ ଉତ୍କଳ (ତାର) ତନ୍ଦ୍ରା ଯାଉରେ ଉଡ଼ । ୭ ।

ଦେବତା —

ତୁମରି ଜ୍ୟୋତି ପରଶ ପାଇ
ପଙ୍ଗୁ ଲଙ୍ଘି ପାରେ ଗିରି
ତୁମରି ଜ୍ୟୋତି ମାନବେ ଦିଏ
ତେଜ ବୀର୍ଯ୍ୟ ଯଶଃ ଶ୍ରୀରି
ସେହି ଜ୍ୟୋତିର କ୍ଷୀଣ ପ୍ରଦୀପ
ଜଳାଏ ଆଜ ଉତ୍କଳବାଳା ଫେଡ଼ ତା ଅନ୍ତର କୋହ । ୮ ।

ଖଡ଼ିଆଳ ସାହିତ୍ୟ ସମିତିର ୪ର୍ଥ ଅଧିବେଶନ ତା ୧୮।୧୦।୪୭ରେ ପଠିତ ।

## ✱ ସୌନ୍ଦର୍ଯ୍ୟ ✱

—ଶ୍ରୀ ହରି ପ୍ରସାଦ ହୋତା

ଯବଗର କଳପନା ନୟନେ ଫୁଟାଇ
ନବରୂପେ ଅମର୍ତ୍ତ୍ୟ-ରୂପସୀ
ଉଭରୁଅ ମୋ ପୁରତେ ହସି ହସି ନିତି
ଆଗୋ ମୋର ସୌନ୍ଦର୍ଯ୍ୟ ଉର୍ବଶୀ । ୧ ।

ନେତ୍ରେ ମୋର ଜାଗେ ମୋହ ସ୍ୱପ୍ନ ମାଦକତା
ଅଙ୍ଗେ ଅଙ୍ଗେ ରୋମାଞ୍ଚ ପୁଲକେ
ବହ୍ନ୍ୟତ ସ୍ୱପନ ବକ୍ଷେ ଶିହି ରହି ଫୁଟେ
ପ୍ରାଣେ ପ୍ରାଣେ ଆଲୋକ ଝଲକେ । ୨ ।

ରକ୍ତିମ ବାରୁଣୀ କୋଳେ ଅସ୍ତୋନ୍ମୁଖ ରବି
ମେଘଧାରେ, ଲତାଶିରେ ହସେ

ତୁମରି ପୂଜାରୀ ରାଣୀ ! କବ ମୁହିଁ ଦୀନ,
ମୁଗଧ ନେତ୍ରେ ରହି ରହି ଚହେ । ୩ ।
ଶରତେ ରଜତ ହାସେ ଝଲକେ ଜୋଛନା
ଫୁଲ ଫୁଟେ ଗନ୍ଧବହ ଛୁଟେ
ବାସନ୍ତୀ ପ୍ରଦୋଷେ ଲୋଟେ ସରଗ ସୁଷମା
ପ୍ରାଣେ ଫୁଲ ଅଭସାର ଉଠେ । ୪ ।
ଆଷାଢ଼ର ପ୍ରାବୃଟରେ ମୂର୍ଚ୍ଛେ ମୋର ଝରେ
ରାଣୀ ଭବ୍ୟ ତୁମର ସଂଗୀତ
ବିଜୁଳୀ ଝଲକେ ଖେଳେ ଅଧରେ ମୋ ହସ
ବକ୍ଷେ ତବ ରୂପ ସ୍ୱପ୍ନାୟିତ । ୫ ।
ଯୁବତୀର ରକ୍ତାଧରେ, ବିଦ୍ୟୁତ ନୟନେ
ଘନ-ପୀନ ଉରଜ ସମ୍ଭାରେ
ଚଳା ଲୋକ ମଧୁହାସେ ତୁମରି ନିବାସ,
ବିଭୂଯୁକ୍ତ ତୁମରି ବିଭବେ । ୬ ।
ଧନୀ ଆଉ ଦରିଦ୍ରରେ ନାହିଁ ଭେଦା ଭେଦ
ସାମ୍ୟନୀତି ତୁମରି ରଚନା
ଅୟି ! ମୋର କଳ୍ପନା ଉର୍ବଶୀ ସୌନ୍ଦର୍ଯ୍ୟ ରୂପସୀ
ଘେନ ମୋର ପ୍ରାଣର ଅର୍ଚ୍ଚନା । ୭ ।





# ✽ ସ୍ୱପ୍ନ ✽

ଶ୍ରୀକାନ୍ତ ଧଳ

କନକ କିରଣ ରବ
ଯାଏ ଗୋ ହରଷେ ଡୁବ
ପତୀତ ଉଦ୍ଧାତେ ପଙ୍କୁ ଖେଳ
ସୁନୀଳ ଗଗନ ବୁକେ
ସନ୍ଧ୍ୟା ବଦନ ଶେଷେ
ଧୀରେ ଦଏ ଦେଖା ଶଶିହସି
ମଦୀର ହିଲ୍ଲୋଳ ତାଳେ
ସୁରସୀ ମଲ୍ଲୀକା ଖେଳେ
ସଂଗୀତ ମୂର୍ଚ୍ଛନା ଭେଳେ
ତରୁ ଶୀଖେ ଫୁଲ ଦୋଳେ
ଭୁବନ ମୋହିନୀ ଦେବୀ, ଧରାଧାମେ ଆସ ହସି । ୧ ।

ବାତାୟନ ପଥେ ଷ୍ଟଦ
କରେ ଗୋ ଆଲୋକେ ରଙ୍ଗ
ପ୍ରେମ ତନ୍ଦ୍ରା କ୍ଲିଷ୍ଟ କିଶୋର କପାଳେ
ଚନ୍ଦନ ପ୍ରଲେପ ଦଏ ଲେପି
ଆଖି କୋଣେ ହସି ଗୋ ପରସି,
ତୁମେ ଗୋ ଆସ ମାନସି
ମଞ୍ଜୁ ନୁପୁର ପଦ ପଦେ
ଚନ୍ଦ୍ରିକା ଚଞ୍ଚଳ ତବ
ପୁଲକାଏ ମମ ଅପଘନେ

ପ୍ରେମର ଜାହ୍ନବୀ ଶୀତ ବାରି ସିଂଚି କି ଗୋ
ମମ ରିକ୍ତ ପ୍ରାଣେ ତନ୍ଦ୍ରା ପଥେ ଆସି ? । ୨ ।

ଆଣ ତୁମେ ରୋମାଞ୍ଚ ସୁନ୍ଦରୀ
ତୁମେ ଇ ଗୋ ମୂକ ଜଡ଼ପ୍ରାଣେ
ପ୍ରେମର ମୂର୍ଚ୍ଛନା ଦିଅ ଢାଳ
ଉଲୁସାଇ ତନୁ ପଉବନ
ଅବଗାହେ କିଶୋର ମୁଁ ସଖି
ତବ ପ୍ରେମ ସଲିଳେ ବଳସି
ଦେଖି ମୋର ସରସିଜ ମୁଖି
ବହୁଳ ମୁଁ ସତ୍ୟେ ତୁମ ଲାଗି
ତୁମେ ଇ ଗୋ ପରଣ ଇପସିତ
ତୁମେ ଇ ଗୋ ରଣୀହ୍ରଦ ଶଶି । ୩ ।

ଜାଣିଛ କି ତୁମେ ?
ଜାଳଥିଲି ଜାଗର ଗୋ ବସି
ଯାହା ଲାଗି କେତେ ଅହର୍ନିଶି
ଆଶା ମୋର ଆଶାରେ ରହିଛି
ଦଗ୍ଧପ୍ରାଣ ଭ୍ରାନ୍ତ ମୁଁ ଗୋ ଭରମି ମରିଛି
ଆସ ମୋର ଆଶା କଳ୍ପଲତା, ସ୍ୱର୍ଗ ତପସ୍ୱିନୀ
ନ ଥିଲ ଗୋ ପାଇ ଏତେ ଦିନେ
ମାନସି ଗୋ ଆସ ସାଥି ସ୍ୱପ୍ନ
ଜୀବନର ମଧୁ ଅଭିସାରେ ନ ପାହୁ ଗୋ ନ ପାହୁ ଯାମିନୀ । ୪ ।

ହେଲେ:- ଆଜୁ ଦିନ ପରେ ରତି
ଯାଉ ଦୂରେ ଯାଉ ଧୀରେ ବତି

ବାହାର ଦୁନିଆ ଯାଉ ଡୁବି
ପ୍ରେମେ ଭୁଲି ତୁମ ପାଶେ ଥିବି
ସ୍ୱପ୍ନେ ! ତୁମେ ରୁହ ଚୀର ସାଥି
ଜୀବନରେ ଏ ଅଙ୍ଗ ପରଷ
ଢୋଳିଦିଏ ତୁମରି ତନୁରେ
ଜଡଯାଉ ପରଶେ ପରଶ
ହେଉ ଶୁଭ ଏ ମିଳନ ତିଥି ।୫।

ଯାଅ ଦୂରେ ଦିଗ୍‌ବଳୟ ଶଶି
ହେମ ପ୍ରଭ ଯାଉ ତୁମ୍ ଲେପି
ଏ ପିପାସୀ ଅଧର ପରଶେ
ଫୁଟି ଉଠୁ ତବ ଶୋଭରାଶି
ନ ହୁଅ ଗୋ ନ ହୁଅ ଚଞ୍ଚଳା
ନ ଯାଅ ରୋ ମୋର ସ୍ୱପ୍ନପ୍ରିୟା
ଜୀବନରେ ନ ହୋଇ ଚପଳା
ଜଡରହ ଆରୋ ସ୍ୱପ୍ନବାଳା
ଚିରଦିନ ରହେ ମୁଁ ବିକଳି
ତବ ପ୍ରେମେ ଅଧୀର ପ୍ରିୟସି । ୬ ।



# ଯୁଗଳ ଭଗିନୀ

ଶ୍ରୀ ଶିବ ନାରାୟଣ ଦେବ

ଦିନର ଯାବତ କାର୍ଯ୍ୟ କରି ଶେଷ,
ଅସ୍ତାଚଳେ ରବି ହେଲେ ପରବେଶ । ୧ ।
ପଶ୍ଚିମ ଗଗନେ ରଙ୍ଗେ ଅରୁଣିମା,
କି ସେ ଦେବୀ ସତୀ ନିବାରିଣୀ ସୀମା । ୨ ।
ଅବା ଦିନମଣି ବିରହେ ଦିବସ,
ମାନ ଭରେ ମୁଖ କରିଛି ବିରସ । ୩ ।
ରବି ରଥଚକ୍ର ଘାତ ଜାତ ଧୂଳି,
ଉଡ଼ାଇ କି ଅବା ଗଗନ ଉଚ୍ଛୁଳି । ୪ ।
କିବା ରୁଣ୍ଡ ହୋଇ ଅଷ୍ଟ ଦିଗପାଳ,
ହରଷ ରଭସେ ଖେଳନ୍ତି ଗୁଲାଲ । ୫ ।
ବୀର ଧନଞ୍ଜୟ ସଙ୍ଗେ ହୁତାଶନ,
କରନ୍ତି କି ଅବା ଖାଣ୍ଡବ ଦହନ । ୬ ।
ଦେବ ଚତୁକଣ୍ଠ ବାସବ ହୁକୁମେ;
ବୈଜୟନ୍ତ ଅବା ବୋଳନ୍ତି କୁଙ୍କୁମେ । ୭ ।
ମନ୍ଦାର-ମାଳିନୀ ବନ ଦେବୀଙ୍କର,
ମଥାମଣି ଅବା ଝଟକେ ସୁନ୍ଦର । ୮ ।
ବାରିନିଧି ଅବା ଭୀମ ପ୍ରଭଞ୍ଜନେ,
ପ୍ରବାଳ ଲହରୀ ଟେକିଛି ଗଗନେ । ୯ ।
ଇନ୍ଦ୍ର ଅଭିଷେକ ଲାଗି ଦେବ ସଭ୍ୟ,
ରତ୍ନ ଚନ୍ଦ୍ରାତପ ଟାଣିଛନ୍ତି ଅବା । ୧୦ ।

ଦଗଙ୍ଗନାମାନେ ଅତୀବ ଉଲ୍ଲାସେ,
ଦେହଯାକ ମଣ୍ଡି କୁସୁମୀ ସୁବାସେ । ୧୧ ।
ରତ୍ରୀ ଦେବୀଙ୍କର ନିରଜନା ପାଇଁ,
ଦିଗ୍‌ବିଦଗୁଁ ଅବା ଆସିଛନ୍ତି ଧାଇଁ । ୧୨ ।
ଦିବା ଅଭିନୟ ଶେଷ ହେଲା କ୍ଷଣ,
ରଙ୍ଗ ଯବନିକା ହେଲା କି ପତନ । ୧୩ ।
ହେମ ସିଂହାସନେ ଗୁଲାବୀ ବସନେ,
ବିଜେ କଲେ ସନ୍ଧ୍ୟା ଦେବୀ ତୋଷମନେ । ୧୪।
ତପନ ତାପରୁ ତରିଲା ଭୁବନ,
ଶୀତଳ ପବନେ ଉଲ୍ଲସିଲା ମନ । ୧୫ ।
ମନ୍ଦ ଗନ୍ଧବାହ ଶୀତଳ ତରଙ୍ଗେ,
ନୀଡ଼ ଅଭିମୁଖେ ଉଡଲେ ବିହଙ୍ଗେ । ୧୬ ।
ଡାଳେ ଡାଳେ ବସି କପୋତ ଦମ୍ପତି,
କେ ଜାଣି ନିରବେ ମନେ କି ଭାବନ୍ତି । ୧୭ ।
ଖର୍ଜୁର କାନନେ ଧୃଷ୍ଟ ହୋଇ କାକେ
ଗାଉଛନ୍ତି ବିଭୁ ଗୁଣ ଏକ ବାକ୍ୟେ । ୧୮ ।
ଶୁଭୁଛି ଯେପରି ଯବନ ସମାଜ,
ସନ୍ଧ୍ୟା ସମୟରେ ପଢନ୍ତି ନମାଜ । ୧୯ ।
ସରୋବରୁଁ ତେଜି ଆପଣା ଜୀବିକ,
ଯାଉଛନ୍ତି ତରୁ ବାସେ ବାକଳିକା । ୨୦ ।
ଚନ୍ଦ୍ରାକାରେ ଉଡ ବାଦୁଡର ଦଳ,
ଗଲେ ବୃକ୍ଷୋପରେ ପିଇ ମନ୍ଦେ ଜଳ । ୨୧ ।
ବାହାରିଲେ ଭୁଲ ବେଶଭୂଷାଧାରୀ
ବୁଲି ବୁଲ ବନୁ ଫେରିଲେ ଶିକାରୀ । ୨୨ ।

ଗୁଳିକ ଜେ ଖରେ ଯାଉଣ୍ଟି ବଡଯୀ
ଯେଣି ଅନ୍ଥ କରେ ଡପୁଣ୍ଡା-ଗଡଯୀ । ୨୩ ।
ମଳ-ଚିଣ୍ଡା ଜନା କୁବେଣୀ କଟିରେ,
ଥୁଣ୍ଟି ପିକା କାନେ, ବାମେତର କରେ । ୨୪ ।
ଭାଲ ଫିଙ୍ଗି ଫିଙ୍ଗି ଧ୍ରୁବରେ ସଧୀରେ,
ଭ୍ରମିଲେ ହ୍ରଦେ ଜଳ ତୀରେ ତୀରେ । ୨୫ ।
ନିର୍ଦ୍ଦୋଷୀ ଜୀବକୁ ବଧନ୍ତି ପିଶୁନେ,
ବ୍ୟାଘ୍ର ଠାରୁ ବଳି ହିଂସ୍ର ଶତଗୁଣେ । ୨୬ ।
ନାହିଁ ମିକି ଅନ୍ୟ ଉପାୟ ଜଗତେ,
ପେଟ ପୋଷିବାକୁ ଅର୍ଜ୍ଜ କିଅବେ ? । ୨୭
ବନଷ୍ଟରୀ ନାନା ପଶୁପକ୍ଷୀ ଗଣେ,
ବଧି ବ୍ୟାଧ ବଳେ ପେଟର ପୋଷଣେ । ୨୮
ବଧର୍ମୀ ଏ ନିତି ପଇସା ଲାଳସେ,
କରନ୍ତି ଗୋବଧ ହରଷ ମାନସେ । ୨୯ ।
ଷବାହ୍ର ଭହବେ ଖେଜେ ଦୁଷ୍ଟ ଦସ୍ୟୁ,
ମହା ମହାବଳ ପୁଚ୍ଛହୀନ ପଶୁ । ୩୦ ।
ରସନା ଲାଳସେ ମହାଦି ସେବନ୍ତି,
ସେବିଣ ପରମ ଆନନ୍ଦ ଲଭନ୍ତି । ୩୧ ।
ମାଛମାନେ କିସ ଖାନ୍ତି ଭବି ଦେଖ
ମାଛ ତରକାରୀ ସାକ୍ଷାତ ନରକ । ୩୨ ।
ଦେବ ବଳି ଛଳେ କୋଟି କୋଟି ପଶୁ
ବଧନ୍ତି ପିଶୁନେ ଜିହ୍ୱା ଲୋଭ ବଶୁଁ । ୩୩ ।
ଈଶ୍ୱର ବଲ୍ଲଭା ମଙ୍ଗଳ କାରିଣୀ,
ବିଶ୍ୱ ମାତା ପଦ ବୋଲଉ ତାରିଣୀ । ୩୪ ।

ମାତା ସନ୍ତାନର ମାଂସ ଭକ୍ଷିବାର,
ଶୁଣା ତ ନ ଥିଲ ଦେଖିବା ଦୁର୍ବାର । ୩୫ ।
ତୁହି କି ମା ସତେ ମାଗୁ ବୋଦା ବଳି ?
ନାହିଁ ନାହିଁ କିମ୍ବା କହନ୍ତୁ ଏ ଭଳି । ୩୬ ।
ଜିହ୍ୱା ଲୋଭେ ପଡ଼ ଯଭି ଅନ୍ଧ ଦଳେ,
କରନ୍ତ ଏ ପାପ ପୁଣ୍ୟର ବଦଳେ । ୩୭ ।
ଏହି ମହାପାପେ ଚଣ୍ଡାଳ ସବୁତ,
ପା'ନ୍ତ ଢୀବେ ଅନ୍ତେ ଯନ୍ତ୍ରଣା ରୌରବ । ୩୮ ।
ଧିକ ଯଜ୍ଞ ବିଧି ସଂହିତା ପୁରାଣେ,
ଶାନ୍ତ ପଶୁ ବଧ ପଢ଼ିରେ ବଖାଣେ । ୩୯ ।

X X X

ବାଗେ ଠାବେ ଠାବେ ନରନାରୀ ଗଣେ,
ଭ୍ରମିଲେ ପ୍ରମୋଦେ ସାନ୍ଧ୍ୟ ସମୀରଣେ । ୪୦ ।
ଢଣ କେତେ ନାରୀ ଘାଟେ ଯାଇଥିଲେ
ଜଳ କୁମ୍ଭ ଘେନି ଘରେ ବାହୁଡ଼ିଲେ । ୪୧ ।
କେ ରସିକ ନିଶ ସଳଖି ସଳଖି,
ବୁଲେ ଧୀରେ ତୀରେ ଅଟକି ଅଟକି । ୪୨ ।
ଦୁଷ୍ଟ ଟୋକା କେହୁ ଚଉପଦୀ ପଦେ,
ରମଣୀ କି ଦେଖି ଗାଇଲା ଆନନ୍ଦେ । ୪୩ ।
ଠରାଠରି ହୋଇ ଏକାଳେ ଚତୁରେ
ନାଗର ନାଗରୀ ଗଲେ ନିଜ ପୁରେ । ୪୪ ।
ସ୍ନାନାନ୍ତେ ଭୂଦେବ ଓଦାବାସ ପିନ୍ଧି,
ଏକ ଚିତ୍ତେ କଲେ ସନ୍ଧ୍ୟା ଯଥାବିଧି । ୪୫ ।

ଓଦା ବସନରେ କେ ସଖିକି ରହି
ଚାକି ଅଛି କୂଳେ ସଙ୍ଗେ ଯିବା ପାଇଁ । ୪୬ ।
ସୁନ୍ଦରୀ ବସନୁ ଜଳ ସ୍ରବିବାରୁ
କଳ୍ପନାର ପଟେ ଝଲେ ଖୀର ଋତୁ । ୪୭ ।
ଏ ଶ୍ରୀଅଙ୍ଗ ଛାଡ ସଦନେ ମୁଁ ଗଲେ
ଦୂର ହେବି ଖଳ କାହେ କି ବିକଳେ । ୪୮ ।

X X X

ବାଜଲା ଦେଉଳେ ସନ୍ଧ୍ୟା ଶଂଖ ଘଣ୍ଟ
ପଖାଉଜ ଡମ୍ଫ ଝାଂଝ ବଢେ-ଘଣ୍ଟ । ୪୯ ।
ଢୋଲକ ନୌବତ ଧୌଁସା କରତାଳ
ନରସିଂହା ଡଙ୍କା ଖଞ୍ଜଣ କସ୍ତାଳ । ୫୦ ।
ପୈଁକାଳ ମୃଦଙ୍ଗ ଗିନି ଏକତାର
ମଞ୍ଜିର ତବଲା ସେତାର ଚୌତାର । ୫୧ ।
ଶ୍ୱେତ ସୁବସନୀ ପଙ୍କଜ ବାସିନୀ
ଅଜ୍ଞ ନିଷ୍ଠୁରର ଜଡତା ନାଶିନୀ । ୫୨ ।
ଶାରଳା ଦେବୀଙ୍କ ଶ୍ରୀକର ଶୋଭନୀ,
ବୀଣା ସପ୍ତସ୍ୱର ମନ ବିମୋହିନୀ । ୫୩ ।
ସାରଙ୍ଗୀ କଚ୍ଛପୀ ମଧୁର ନାଦନୀ
ଶ୍ରବଣେ ପୀୟୂଷ ପ୍ରବାହ ବାହିନୀ । ୫୪ ।
ଲାଗିଲା ପ୍ରଭୁଙ୍କ ମଙ୍ଗଳ ଆଳତି
କର ଯୋଡ କଲେ ଭକତେ ବନତି । ୫୫ ।
ଆରମ୍ଭିଲେ ନଟେ ସୁନ୍ଦର ନର୍ତ୍ତନ,
ଚଉଦ ପଅମେ ଗାଇଲେ ବଦନ । ୫୬ ।

ଜଟା ଭସ୍ମଧାରୀ ବଇରାଗୀଗଣ,
ତମ୍ବୁରା ବଜାଇ ଗାଇଲେ ଭଜନ । ୫୭ ।
ପଗସ୍ବର ପଦ୍ମ ପାଦେ ଦେଇ ମତି
ଆରତ ଆରତେ ଗାଇଲେ ଆରତି । ୫୮ ।
ସୁମଧୁର ତାନେ ପଞ୍ଚମର ସ୍ୱରେ
ନେକିଲ କେ 'ଜୟ ଜଗଦୀଶ ହରେ' । ୫୯ ।
ବାଦ୍ୟ ନୃତ୍ୟ ଗୀତେ ଉଛୁଳ ଦେଉଳ
ବେଲୁ ବେଳ ହେଲା ଗହଳେ ଚହଳ । ୬୦ ।
"ଜଗଦୀଶ ଜୟେ" ପୂରିଲା ଅମ୍ବର
ପ୍ରତିଧ୍ୱନି ଛଳେ ଗାଇଲା କନ୍ଦର । ୬୧ ।
ସିନ୍ଧୁ ମୁଖ "ଜୟ ଜଗଦୀଶ" ଘୋଷ,
ଶୁଣି ଦେବବୃନ୍ଦ ଲଭିଲେ ସନ୍ତୋଷ । ୬୨ ।
ପ୍ରଭୁଙ୍କର ଲୀଳା ଖେଳା ଏ ଉତ୍ସବେ,
ବ୍ୟୋମ ପଥେ ରହି ଦେଖିଲେ ଅମରେ । ୬୩ ।

X X X

ପ୍ରାଚୀର, ଭବନ, ପାଦପ ଛାୟାରୁ
ବିଲୁଆ ବିବରୁ, ପୁର ପରିଖାରୁ । ୬୪ ।
ନିର୍ଜନ ମନ୍ଦରୁ, ପର୍ବତ କନ୍ଦରୁ,
ତରଙ୍ଗିଣୀ ତୀରୁ, ଅଗାଧ ସାଗରୁ । ୬୫ ।
ଫୁଲ ଉପବନୁ, ନିଘଞ୍ଚ କାନନୁ,
ଦଗାଦାର ମନୁ, ତସ୍କର ନୟନୁ । ୬୬ ।
ଖଚୁଆ ମୁଖରୁ, ଘାତକର କରୁ,
ଦୁଷ୍ଟ ମସ୍ତିଷ୍କରୁ, କପଟୀ ହୃଦରୁ । ୬୭ ।

ପ୍ରେମିକ ପ୍ରେମିକା ବେନିଙ୍କ ପ୍ରେମରୁ,
ମୀନକେତନେର ପଞ୍ଚ ନାରଚରୁ । ୬୮ ।
ଘୋର ରୂପ ଧରି ଚାହାଁରି ଅନ୍ଧାର
ହେଲା ଅଗ୍ରସର ଗ୍ରାସିବ ସଂସାର । ୬୯ ।
ପରିନ୍ଦର ଦଳେ ଚମଃ ସଙ୍ଗେ ସଙ୍ଗେ
ଆନନ୍ଦେ ନିର୍ଭୟେ ବିହରିଲେ ରଙ୍ଗେ । ୭୦ ।
ଗମିଲା ଗଧିଆ ଗୁହା ତେଜି କରି
ସଢ଼ା ମଢ଼ ଯହିଁ ଗନ୍ଧ ଅନୁସରି । ୭୧ ।
ଭଲ୍ଲୁକ ହରଷେ ତରକି ତରକି
ସ୍ଥଳେ ସ୍ଥାନେ ୨ ଅଟକି ଅଟକି । ୭୨ ।
ଭୀମ ପରାକ୍ରମ ସିଂହ ବନପତି,
ଦୁରନ୍ତ ତୁରୁକା, ଶାର୍ଦ୍ଦୂଳ ଦୁର୍ମତି । ୭୩ ।
ତିଆଗି ଅଳସ ସମୟେ ଉଠିଲେ
ଶିକାର ଚଳସେ ସଧୀରେ ଗମିଲେ । ୭୪ ।
ଅରଣ୍ୟ ମହିଷ, ସମ୍ବର, ଗୟଳ
ଚାହାଁରିଲେ ଚରି କୋଟର ଭିତଳ । ୭୫ ।
କ୍ଷୁଧାର ଆତୁରେ କିରୀକିଟି ଦଳ
ଉଠି ଦେହ ଝୁଣି ଧାଇଁଲେ ଚଞ୍ଚଳ । ୭୬ ।
ଭକ୍ଷି ପଦେ ଦଳ ଫସଲ ବଶେଷ,
କ୍ଷତି କରିଥାନ୍ତ ଚଷାର ଅଶେଷ । ୭୭ ।
ତମ୍ଭୁକ ନିବହ ଗ୍ରାମର ନିକଟେ
ଏକେ ଏକେ ଆସି ରଡ଼ିଲେ ଝକଟେ । ୭୮ ।
ଜଗତରେ କି ସେ ରଜନୀ ମାତାର
ଶୁଭ ଆଗମନ କରନ୍ତୁ ପ୍ରଚାର ! । ୭୯ ।

ଉଲ୍ଲୁକ, ପେଚକ କୋଟରୁ ବାହାରି
ରବରେ ଉତ୍କଟେ ଦିଗନ୍ତ ବଦାରି । ୮୦ ।
ଆଗେ ଆଗେ ରହି ଖୁଣ୍ଟିଆ ଉଭୟ
ଗାଉଛନ୍ତି କି ସେ ରଜନୀର ଜୟ । ୮୧ ।
ଶୁଣି କୀଟ, ମୂଷା, ଏଣ୍ଡୁଅ, ଛୁଣ୍ଡୁଚ
ତରସ୍ତେ ରହିଲେ ଯହିଁ ତହିଁ ଲୁଚି । ୮୨ ।
ଏଣେ ଗଣ୍ଡିଅର ନିଚୟ ନିର୍ଭିକେ,
ଭକ୍ଷ ଅନ୍ୱେଷଣେ ଭ୍ରମିଲେ ଚୌଦିଗେ । ୮୩ ।
କ୍ରମେ କ୍ରମେ ହେଲା ବିଳୟ ଉଜ୍ଜ୍ୱଳ
କ୍ରମେ କ୍ରମେ ହେଲେ ଦୁର୍ଜନେ ପ୍ରବଳ । ୮୪ ।
କ୍ରମେ କ୍ରମେ ହେଲା ଅନ୍ଧାର ନିବିଡ଼,
କ୍ରମେ କ୍ରମେ ପଥେ ଉଣା ହେଲା ଭିଡ଼ । ୮୫ ।
କ୍ରମେ ଯେଣୁ ହେଲା ରଜନୀ ଅପାର
କ୍ରମେ ଘରୁ ହେଲେ ଦୁରନ୍ତେ ବାହାର । ୮୬ ।

X X X

ତର ବିରହୀର ମତି ଧୃତି ଦଳି
ଫୁଟିଲା ଅନଙ୍ଗ ଜୟ ଶଙ୍ଖ "ମଲ୍ଲି" । ୮୭ ।
ବିଜୟୀ ମଦନ-ଶର ଏକ-ମୁନା
'କରବୀର" କରେ ଯୁବା ଦମ୍ଭ ଚୂନା । ୮୮ ।
ସତେ କି ଏ ସାଧ୍ୱ ବିରହୀ ଅହିତ
ହୋଇଅଛି ତାଙ୍କ ରୁଧିରେ ଲୋହିତ । ୮୯ ।
"ଗଜଦନ୍ତ" କାମ ରଣଘୋଷ ତୁରୀ
ଦେଖିଲେ ପ୍ରେମିକ ହିୟା ହୁଏ ଚୂରି । ୯୦ ।

ଏ ପର କାମିନୀ କାନେ ରହିଥିଲେ
କାମୁକ ମନକୁ ନ ଛାଡଇ ତିଳେ । ୯୧ ।
ଫୁଟିଲା ଲଷିତ ବଙ୍କା "ବଗଦାନ୍ତ"
ସତେ କି ଏ କାମଯମ "ଯମଦାନ୍ତ" । ୯୨ ।
ମଧୁପ ଲମ୍ପଟ ବିମୋହିନୀ "ଜାଇ"
ବିରହେ ହୃଦୟ ଦିଅଇ କମ୍ପାଇ । ୯୩ ।
"ମାଧବୀ" କନ୍ଦର୍ପ କୁସୁମ କାର୍ମୁକ
ଦେଖି ଯୁବା ଭୟ ଭଜି ହେବେ ମୂକ । ୯୪ ।
ଅନଙ୍ଗ ଅନଳ "ରଙ୍ଗଣୀ" ସୁମନ
ଯୁବାସିଙ୍କି ସତେ କରିବ ଦହନ । ୯୫ ।
ହରଷେ ନିଶୀଥେ ତାର ପତି କୋଳେ
ହସଇ ଯେସନ ନାରୀ ପ୍ରେମ ଭେଳେ । ୯୬ ।
ତେସନ ବକସି ପ୍ରମୋଦେ ଏ ଫୁଲେ
ପବନ ହିଲ୍ଲୋଳେ ହସନ୍ତ ପ୍ରଫୁଲ୍ଲେ । ୯୭
ଯଥା ତାର ପତି ପ୍ରିୟ ମିତ୍ର ଆଗେ
ପ୍ରେମିକାର କଥା କହେ ଅନୁରାଗେ । ୯୮ ।
ତଥା ଲେକେ ବହି ମନ୍ଦ ସମୀରଣ
ସୁମନ ବାସ କରେ ବତରଣ ! । ୯୯ ।
ସରସୀ ସୁନ୍ଦରୀ ପ୍ରାଣର ସମ୍ପଦ
ଫୁଟିଲ "କହ୍ଲାର" ରକ୍ତ କୋକନଦ" । ୧୦୦ ।
ଫୁଟିଲା ' ତଗର-ପାଦ" ଚାତାନ୍ତକ
ସର – ସୁରବାଳା ହୃଦୟ ପଦକ । ୧୦୧ ।
ଫୁଲ୍ଲ ସୁକୁମାରୀ "ଗୋଲବ" ସୁନ୍ଦରୀ,
ଫୁଲ ଲକ୍ଷ୍ମୀଙ୍କର ପ୍ରିୟ ସହଚରୀ । ୧୦୨ ।

ନାହିଁ ପଟାନ୍ତର ତୋର ସୁଲପନା
ତୁହି ଏକା ତୋର ସୁଯୋଗ୍ୟ ତୁଳନା । ୧୦୩ ।
ତୋ ଛବି ଗରିମା ଦେବତାଙ୍କୁ ଜଣା
ନର ତାର କାହୁଁ କରିବ କଳଣା । ୧୦୪ ।
ବହୁ ମୂଲ୍ୟ ମଣି ମାଣିକ୍ୟ ରତନ
ତୁଚ୍ଛବେ ତୋଠାରୁ ପା'ନ୍ତି ନୀରସନ । ୧୦୫ ।
ଏଣୁ କି ସାଗର ତଥା ଭୂଗର୍ଭରେ
ଲୁଚ ରହିଛନ୍ତି ଲଜ୍ଜା ଦୁଃଖଭରେ । ୧୦୬ ।
କିଞ୍ଚିତ ମାଧୁରୀ ଲଭି ତୋହଠାରୁ
ବାମା ଗୌରବଗଣ୍ଡେ ସଞ୍ଚି ରଖିବାରୁ । ୧୦୭ ।
ମୋହନ୍ତି ସହଜେ ଜଗତର ମନ
ମୋହନ୍ତି ପାତାଳ ଅମର ଭୁବନ । ୧୦୮ ।
ତୋତେ ଲଭି ନାରୀ ମନ ଆନନ୍ଦତ
ବଢାଉ ଦ୍ୱିଗୁଣେ ଲଳନା ଲାଳତ୍ୟ । ୧୦୯ ।
ଲଭିବାକୁ ଦେବ ବର "କୈରବିଣୀ"
ଶଶି ସଙ୍ଗେ ପ୍ରୀତି କଲା ଉଖାରିଣୀ । ୧୧୦ ।
ତଥାପି ତୋ ସମ ନ ହୋଇ ବିକଳେ
ତପ କରେ ଅହର୍ନିଶି ବସି ଜଳେ । ୧୧୧ ।
ରାଣୀ ପଦ ଲଭି ଚଷା କୁଳବଧୂ
ପିଇ ପାରଇ କି? ଗଡାଧରୁ ମଧୁ । ୧୧୨ ।
ମହା ବିଡମ୍ବନା ହୋଇ କାକ ବଧୂ
ପାଞ୍ଚିବା ହେବାକୁ କୋକିଳର ବଧୂ । ୧୧୩ ।
ଖର୍ବ ହୋଇ ଇଚ୍ଛେ ସୁରତରୁ ଫୁଲ
ଆଶା ତୁଳନାରେ କି ଭୁଲେ କି ଭୁଲ । ୧୧୪ ।

ଫଳର କି କାଳେ କରେ ଯା ଏ ଶ୍ରମ
ହେବାକୁ ଗୋଲବ ବାଳା ! ତୋର ସମ । ୧୧୫ ।
ନ ହୁଅଇ କେବେ ଗାବେ ହେଲେ ଆନ
ଲଲାଟ ଲିଖନ ବିଧିର ବିଧାନ । ୧୧୬ ।
ନିଜ ଆଧୁନିକ ରୁଚି ଅନୁସରି
ରହିବାର ବିଧି କପାଳ ଆଦରି । ୧୧୭ ।
ଖ – ପୁଷ୍ପ ପରି ଏ ବସନାକୁ ମଣି
ଥିଲେ ଯେ ହୁଅନ୍ତା ଆଦର୍ଶ ରମଣୀ । ୧୧୮ ।
ମତ୍ତ ହୋଇ ନିଜ ସୁନ୍ଦର ସୌରଭେ,
ଟେକି ଅଛି ଶିର "ଚମ୍ପା" ଗୋରୀ ନଭେ । ୧୧୯ ।
ଗର୍ବିଣୀ ହେବାକୁ ଚହି ମନେ ଦୁଃଖ,
ତା ପାଶେ ଯିବାକୁ ଭ୍ରମର ବମୁଖ । ୧୨୦ ।
କରିବାକୁ ନିଜ କାର୍ଯ୍ୟର ସାଧନ
ତୋଷାମଦ ଯିନା କରଇ ପବନ । ୧୨୧ ।
ଘଟୁ ଗୀରେ ଫୁଲି ମନ୍ଦ ପବନର
ନିଜକୁ ସେ ମଣେ ଶ୍ରେଷ୍ଠୁ ଶ୍ରେଷ୍ଠତର । ୧୨୨ ।
ପ୍ରେମିକାର ମନ ମୋହନେ ପ୍ରେମିକ
ଟେକା ଟେକି କରି କହଇ ଅଧିକ । ୧୨୩ ।
ବାହ୍ୟ ମାଧୁରୀରେ ଭୁଲେ ମୂଢ ମନ,
ସଦ୍‌ଗୁଣ ଚତୁରୀ ଲୋଡେ ବିଜ୍ଞଜନ । ୧୨୪ ।
"ସୀତା-ମନୋହର" ନାମ ମାତ୍ର ସାର
ଅଘ୍ରାଣେ ହୁଅଇ ମଥା ବ୍ୟଥା ସାର । ୧୨୫ ।
"କେତକି" କାମିନୀ ବଡ ମାୟାବିନୀ
କଳଙ୍କିନୀ ଯେଣୁ ଭ୍ରମର ଘାତିନୀ । ୧୨୬ ।

ମଦ ହସା ହସି "ମଲ୍ଲୀ" ମନ କିଣେ
ଅଳଭୂକ ପଣେ ତ୍ରିଭୁବନ ଜଣେ । ୧୨୭ ।
"ସୂର୍ଯ୍ୟମୁଖୀ" ଦେଖି ତୋ ରୂପ ରଚନେ
ବସିଅଛୁ ଲଜେ ଆନତ ବଦନେ । ୧୨୮ ।
ନିର୍ଗନ୍ଧ 'କିଂଶୁକ' ନୁହେ ତୋ ସମାନ,
ତନେ ଫୁଟି ଝଡେ ଲଭି ଅପମାନ । ୧୨୯ ।
କୁରୂପ ନିଜର ଘୃଣି "ନାଗେଶ୍ୱର"
ଇର୍ଷାନଳେ ଜଳ ଶୁଷ୍କ କଳେବର । ୧୩୦ ।
ଉଦାସୀନ ବେଶେ "ବକୁଳ" ଲଳନା
ବ୍ୟଥିତ ଅନ୍ତରେ କରଇ ଯତନା । ୧୩୧ ।
ଅଳ ପ୍ରାଣ ସଖି ରବି ପ୍ରଣୟନୀ
ସମୀରଣ ପ୍ରିୟା ସ୍ୱୈରିଣୀ "ନଳନୀ" । ୧୩୨ ।
ଆହା ! କେତେ ରୂପ ଗୁଣବତୀ ଏହି
ମିହିରଙ୍କ ପର ପାଟ ମହାଦେଇ ! । ୧୩୩ ।
ଅଉଜନୀ ଯେତେ କୁସୁମ ସୁନ୍ଦରୀ,
ହେବାକୁ ତୋ ପଦେ କିଙ୍କରୀ କିଙ୍କରୀ । ୧୩୪ ।
ଆନ ଫୁଲେ କେହି ବାର-ବିଳାସିନୀ,
କେହି ବା କୁଳଟା କେହି ବିଟପିନୀ ! । ୧୩୫ ।
ତୁହି ବ୍ରୀଡାବତୀ ବାଳା କୁଳଶିଳା
ପତିବ୍ରତା ଭୀରୁ ସରଳା ସୁଶିଳା । ୧୩୬ ।
ଫୁଲ କୁଳେ ତୋତେ କେ ନୁହନ୍ତି ସରି
ଫୁଲ ରାଜ୍ୟେ ତୁହି ସିନା ଫୁଲେଶ୍ୱରୀ ! । ୧୩୭ ।
ଗୋଲାବ ଅଧର ଗୋଲାବୀ ବସନା
ଗୋଲାବ ଭୂଷଣା ଗୋଲାବୀ ବରନା । ୧୩୮ ।

ଆଗେ ଯେବେ ହସୁଥିବ ମନ୍ଦ ମନ୍ଦ,
କହ ବିଶ୍ୱେ କେ ନ କରିବ ପସନ୍ଦ ! । ୧୩୯ ।
ହେଲେହେଁ ମର୍ଦ୍ଦନ ଗୋଲାବ ଡଇଲେ
ହେଲେହେଁ ମାଡଣା ଗୋଲାବ ସଲିଳେ । ୧୪୦ ।
ଥିଲେ ହେଲେ କୋଳେ ଗୋଲାବ ବରଣ।
ପିଣ୍ଡ ଥିଲେ ହେଲେ ଗୋଲାବର ପଣ। । ୧୪୧ ।
ପିନ୍ଧ ଥିଲେ ହେଲେ ଗୋଲାବୀ ବସନ
କରେ ଥିଲେ ହେଲେ ଗୋଲାବ ସୁମନ । ୧୪୨ ।
ଘେନୁ ଥିଲେ ହେଲେ ଗୋଲାବ ଅତର
ଅବସାଦ ନାହିଁ ଗୋଲାବେ ମନର । ୧୪୩ ।

X X X

ପତିର ବରହେ ଶୋକେ କମଳନୀ
କାନ୍ଦ କାନ୍ଦ ଅହା ବିଶୁଷ୍କ ମଳନୀ । ୧୪୪ ।
କରୁଅଛି ଚିନ୍ତା ନେତ୍ର ଦର-ମୁଦ
କି କରିବ କିଛି ଦିଶୁ ନାହିଁ ବୁଦ୍ଧି । ୧୪୫ ।
କୁମୁଦନୀ ଶିରୀ ନ ସହି ସୁନ୍ଦରୀ
ଯାଉଛି କି ଅବା ଈର୍ଷା ଦୁଃଖେ ମରି । ୧୪୬ ।
କମଳ ସୁନ୍ଦରୀ ! ଭବ କୁମୁଦିନୀ
ଲେଖା ଯୋଖାରେ ନ ତୋ ସାନ ଭଗିନୀ । ୧୪୭ ।
ତୁ ପରା ବୟସେ ମାନେ ଧନେ ଗୁଣେ,
କୁମୁଦିନୀଠାରୁ ତେ ଶତ ଗୁଣେ । ୧୪୮ ।
ପୁଣି ଅଟଇ ସେ ତୋର ଦାସୀ ପରି
ଯେତେ ହେଲେ ତୋତେ କାହୁଁ ହେବ ସରି ! । ୧୪୯ ।

କାହିଁକି ଚାଟାରେ କରୁଚୁ ଈର୍ଷା
କି ଛାର ତୋ ହୃଦ କି ଛାର ତରୀଷା ! ।୧୫୦।
ଦିନ – ନାଥଙ୍କର ପ୍ରିୟ ମହାଦେଈ
ଅଟୁ ପରା ତୁହି ସୁକୋମଳ ଦେହି ।୧୫୧।
ଗୁଣମଣି ରାଣି ! ଥରେ ମନେ ଭାବ,
ଏହା ନି କି ଆହା ! ରାଣୀର ସ୍ୱଭାବ ।୧୫୨।
ଛାଡ ଛାଡ ଈର୍ଷା ଛାଡ ବୈର ଭାବ
ଧର ମିତ୍ର ଭାବ ବହି ଦୟା ଭାବ ! ।୧୫୩।
ଦୋଷ କଲେ ହେଲେ ଉଦଗୁଣ ନିଧି
ପାନକୁ ତ କ୍ଷମା କରିବାର ବିଧି ।୧୫୪।
କର କର କ୍ଷମା ଯେତେ ଦୋଷ ତାର
ପାଇବୁ ପ୍ରଶଂସା ଜଗତେ ଅପାର ।୧୫୫।

X X X

ଦେଖ କୁମୁଦିନୀ ହସେ ଗଦଗଦ
ଲଭିଲା କି ଅବା ପ୍ରାଣର ସଂପଦ ।୧୫୬।
ଟଟି ଭେଟ ଆଶେ ମଦେ ମଦେ ହସି
ଦିବ୍ୟ ରୂପ ଧରି ଆସୁଛି ଶଶି ।୧୫୭।
ଯୌବନ ସୁଷମା ଭଳ ଦରପଣେ
ଲାଜ ହର୍ଷେ ଦେଖି ନିଜେ ଧନ୍ୟ ମଣେ ।୧୫୮।
ଲାଜ ହର୍ଷ ମିଶା ହସ କି ସୁନ୍ଦର
ଯତେ କି ତା ମୁଖ ପୀୟୂଷର ଘର ।୧୫୯।
ଅପହଣୀ ଗୁଣେ ହସି ଖଲଖଲ
ନଳନୀ କି ଅବା ମାରୁଛି ଟିକଲ ।୧୬୦।

ଭଗ୍ନିକି ବିକଳ ମାରିବାର କଥା
ଦେଖିଲି ତୋଠାରେ ଆଜ ନୂଆ କଥା । ୧୬୧ ।
ତୋ ଭଗିନୀ ପର ଦୁଃଖିନୀ ନଳିନୀ
ଉଡ଼ି ଯାଉ ଅଛ ଶୋକେ ବରହିଣୀ । ୧୬୨ ।
କାହିଁକି ଆନନ୍ଦେ ହସୁ କୁମୁଦିନୀ ?
ଭଗିନୀର ଦୁଃଖେ ନ ହୋଇ ଦୁଃଖିନୀ । ୧୬୩ ।
ଦିବସେ ତୋ ସମ ନ ହୋଇ ଦୁଃଖିନୀ,
ହରଷରେ ପୁଣି ହସେ କମଳିନୀ । ୧୬୪ ।
ବରଷର ଚିତ୍ତରେ ଏ କିସ ବିଚିତ୍ର,
ଯୁଗଳ ଭଗିନୀ ତୁମ୍ଭର ଚରିତ୍ର । ୧୬୫ ।
ଭଗିନୀ ଭଗିନୀ ଈର୍ଷା ଯାବେ ପଡ଼
ମରୁଛ କାହିଁକି ଝଗଡ଼ ଝଗଡ଼ ? । ୧୬୬ ।
ଈର୍ଷା କରିବାର କୁସୁମ କୋମଳେ,
ଶିଖାଉଛି ଅବା ମାନବ ସକଳେ ! । ୧୬୭ ।
ତୁମ୍ଭଠାରୁ ନିଶ୍ଚେ ଈର୍ଷା କରିବାର,
ଶିଖି ଲୋକେ ତାହି କରନ୍ତି ବେଭାର । ୧୬୮ ।
ପର ଯଶ କଥା ଶୁଣି କେ ଶ୍ରବଣେ
ହୁଦେ ବଜ୍ରାଘାତ ହେଲା ପ୍ରାୟ ମଣେ । ୧୬୯ ।
ଚକ୍ଷେ ନ ଦେଖିଲେ ପର ଜନ ଦୁଃଖ,
ବରଷ କା ମୁଖ ମନେ ନାହିଁ ସୁଖ । ୧୭୦ ।
ପର ଶିରୀ ଦେଖି କେହୁ ମୁଖ ମୋଡେ
କେ ପୁଣି ଆପଣା ଛାତିକୁ କାମୁଡେ । ୧୭୧ ।
କେଉଁ ମାୟାବିନୀ ପତିର ନିକଟେ
କହେ କା'ର ଖତ ନିଶାକାଳେ ଖଟେ । ୧୭୨ ।

ତା କୁଟିଳ ନେତ୍ରେ ଯଥା ତାପେ ବଲ୍ଲୀ,
ପ୍ରତିବାସୀ ଜନେ ଯାଉଛନ୍ତି ଜଳ । ୧୭୩ ।
କୃଶ କଳେବର ଈର୍ଷାନଳେ ଜଳି
ଛାଡେ ଦୀର୍ଘଶ୍ୱାସ ନାଗିନୀରୁ ବଳି । ୧୭୪ ।
ନିଜ ଦନ୍ତାଘାତେ ରକ୍ତାକ୍ତ ଅଧର
ରସନାରୁ ତାର ସ୍ରବଇ ଜହର । ୧୭୫ ।
ବିଚିତ୍ର ନାଗିନୀ ବିଚିତ୍ର ଗରଳ,
ଦଂଶନାଦି ତାର ବିଚିତ୍ର ସକଳ । ୧୭୬ ।
ଦଂଶଇ ସେ ଯଦି ଏକର ଶ୍ରବଣ,
ତା ବିଷମ ବିଷେ ଅନ୍ୟର ମରଣ । ୧୭୭ ।
ବନ୍ଧୁ ଘଇ ପୁତ୍ରେ ଉପୁଜାଇ ଭେଦ
ଏ ବିଷମ ବିଷ ଜନମାଏ ଖେଦ । ୧୭୮ ।
ବିମାତା ସପତ୍ନୀ ଇର୍ଷା ବଡ ଛଟ,
ଏ ବେନିଙ୍କି ପର ଲୁଛା ନାହିଁ ପାଠ । ୧୭୯ ।
ଈର୍ଷାର ପ୍ରସାଦେ ଯେବେ ଜଳେ ମନ
କରନ୍ତି ଅସୀମ ଅସାଧ୍ୟ ସାଧନ । ୧୮୦ ।
ଛଳେ ବିଶ୍ୱ ଜୟ ଅବଳାର ଦଳ,
କଳିବାକୁ ତାଙ୍କ ମନ କା'ର ବଳ । ୧୮୧ ।
ଏହି କୂଟ ମନ୍ତ୍ରେ ରାମ ପ୍ରିୟ ଭକ୍ଷୀ
ଚଉଦ ବରଷ ହେଲେ ବନବାସୀ । ୧୮୨ ।
ଯାର ମନ୍ତ୍ର ବଳେ ଭୁଲନ୍ତି ଦେବତା
ତା ଆଗେ ନଶ୍ୱର ନରର କି କଥା ? । ୧୮୩ ।

X X X X X

ଈର୍ଷ୍ୟା ଚେଳା ଦଳେ କରି କ୍ରୂର କାମ
କହ ତ ଜଗତେ ଲଭିବ କି ନାମ ? ।୧୮୪।
ଈର୍ଷା କଲେ ପର କାଳେ କୀଟକୁମ୍ଭେ
ପଡନ୍ତି ସକଳେ ନ ଜାଣ କି ତୁମ୍ଭେ ? ।୧୮୫।
ଇନ୍ଦ୍ରେ ନିନ୍ଦା ପରେ କଷଣ ଅପାର
ଛାଡ ଛାଡ ଈର୍ଷ୍ୟା ଅଧମ ବ୍ୟାପାର ! ।୧୮୬।
ଭଂଗୁର ଏ ଭବେ କେହି ରହି ନାହିଁ
ଚିର ଦିନ ପାଇଁ କେ ରହିବ ନାହିଁ ।୧୮୭।
କିଛୁ ଦିନ ଲାଗି ଆସି ଭବ ହାଟେ
ସଉଦା ସରିଲେ ଯା'ନ୍ତି ନିଜ ବାଟେ ।୧୮୮।
କେତେ ଦିନ ଥିବ ଏ ନବ ଯୌବନ
କେତେ ଦିନ ଥିବ ଏ ରୂପ ରତନ ! ।୧୮୯।
ନବ ଯୌବନର ଆଜି ଯେତେ ଝଲି
କାଲକି ନ ଥିବ ଆଉ ସେ ଏ ଭଙ୍ଗି ।୧୯୦।
ଏକ ପରେ ଏକ ଦିନ ଯାଏ ଚାଲି
ବହି ଯାଏ ଯଥାକ୍ରମେ ନଦୀ ବାଲି ।୧୯୧।
ଦିନ ସଙ୍ଗେ ସଙ୍ଗେ କ୍ରମେ ଆୟୁ ଡମା
ଆୟୁ ସଙ୍ଗେ ସଙ୍ଗେ ଯୌବନ ସୁଷମା ।୧୯୨।
ଅତେଉ ଦନିଆଁ ବୃଥା ଅଭିମାନ
କରି କରେ ମୂଢ ଧର ତୁଚ୍ଛ ଜ୍ଞାନ ।୧୯୩।
ଅଲକ୍ଷିତେ ରହି ଟାକି ଅଛି କାଳ
କାଳ ହେଲେ ଝିଂକି ନେବ ତାକ ।୧୯୪।
ନ ଗଣିବ ତିଳେ ଗରବ ଗୁଣକୁ
ନ ଗଣିବ ତିଳେ ସୁନ୍ଦର ପଣକୁ ।୧୯୫।

ନ ଶୁଣିବ ମୃଦୁ ବିନୟ ବଚନ
ବୀଣା ବିନିନ୍ଦିତ ସୁମଧୁର ସ୍ୱନ । ୧୯୬ ।
ନ ମୋହିବ ରୂପ ନବ ଯଉବନ
କାଳ ଦଣ୍ଡଧାରୀ ଡକୁପଚି ମନ । ୧୯୭ ।
କଟାକ୍ଷର ଛଟା ଶାଣ ଦିଆ ବାଣ
ନ ଭେଦିବ ତାର ହୃଦ ବଡ ଟାଣ । ୧୯୮ ।
ନ ମାନିବ ମୃଦୁ ମଧୁ ମନ୍ଦହାସ
ଶମନେ ଭଣ୍ଡିବା ବିଫଳ ପ୍ରୟାସ । ୧୯୯ ।
କ୍ଷଣ ରୁଚି ପରି ଯୌବନ ମଶାଳ
ନ ଜଳବ ସମ ଭବେ ଚିର କାଳ । ୨୦୦ ।
ସ୍ଥିର ନୁହଇ ଏ ଯୌବନ ଜୀବନ
ଅସାର ସଂସାରେ ସ୍ଥିରଟି ମରଣ । ୨୦୧ ।
ଉତ୍ତାଣୀ ତରଙ୍ଗ ସହେ କି ତରଣୀ ?
ହର୍ମ୍ୟ ବାହ୍ନ ତାପ ସହେ କି ଲବଣୀ ? । ୨୦୨ ।
ସହେ କି ସୁମନ ତପନ ତାପନ ?
ବାର୍ଦ୍ଧକ୍ୟର ଧାଡ ସହେ କି ଯୌବନ ? । ୨୦୩ ।
ଘୋଟିବ ଜୀବନେ ଶେଷ ମହାନିଶି
ମାଟିର ଘଟ ଏ ମାଟି ଯିବ ମିଶି । ୨୦୪ ।
ସେତେବେଳେ କାହିଁ ଯିବ ଯଉବନ
ଆଜିର ଦିଶିବ ପ୍ରଫୁଲ୍ଲ ବଦନ ! । ୨୦୫ ।
କାହିଁ ଯିବ ହସ ମିଶା ପ୍ରେମ ବାଣୀ
କାହିଁ ଯିବ ରୁଳି ତେରଛି ଚାହାଣୀ ! । ୨୦୬ ।
ଯଉବନ ମାତେ ମଠା ଗୌରବଗଣ୍ଡ
କାହିଁ ଯିବ ଆଶା ସବୁ ହେବ ପଣ୍ଡ ! । ୨୦୭ ।

କାହିଁ ଥିବ ଭବୀ ସୌଭଗ୍ୟ କଳ୍ପନା
କାହିଁ ଥିବ ସୁଖ ସମ୍ଭୋଗ ବାସନା ! । ୨୦୮ ।
କାହିଁ ଥିବ ଏରୁ ବସନ ଭୂଷଣ
ଚକ୍‌କଣ ଝକଣ ଝଖି ଫୁଲପଣ ! । ୨୦୯ ।
କାହିଁ ଥିବ ଝଲ ଏତେ ରଙ୍ଗ ଢଙ୍ଗ
ଭେଲ ହେବ ଶେଷେ ପ୍ରିୟ ସୁନା ଅଙ୍ଗ । ୨୧୦ ।
ଦୁଇ ଦନ ପାଇଁ ମର୍ତ୍ତ୍ୟେ ଦେହ ଧରି
ବୃଥା ଫୁଲ ଯା'ନ୍ତୁ ଆଡମ୍ବର କରି । ୨୧୧ ।
ଜୀବନେ ଯୌବନ ମଧୁ ମାସ ଶେଷେ
ବୁଝିବ ମୋ କଥା ଉଦାସୀନ ବେଶେ । ୨୧୨ ।



# ଖଡିଆଲ-କୁସୁମ

( ଗୀତି-ଗୁଂଗୁଡ଼ା )

ତୃତୀୟ ଭାଗ

( ଉତ୍ତରାର୍ଦ୍ଧ )

## ଅମର କବି

ଡକ୍‌ଟର ହରେକୃଷ୍ଣ ମେହେର

ଲେଖିଯାଏ ଯେତେ ଅମର କବି
ଅପୂରୁବ ଭାବ ଜାଗି ଉଠେ ମନେ
ଅନୁପମ ତାର ଦିବ୍ୟ ଛବି ।
ବିଧାତାଠୁ ବଳି ତାହାର ସୃଷ୍ଟି
ଅଦ୍‌ଭୁତ ତାର ଉଦ୍‌ଭାବନୀ
ମୂକ ମୁଖେ ଭାଷା – ପୀୟୂଷ ଝରାଏ
ପାଷାଣ ଅଙ୍ଗେ ସଂଜୀବନୀ ।
କାବ୍ୟାକାଶେ ତା' ପ୍ରକାଶେ ନିୟତ
ଅମଳ ବର୍ଣ୍ଣ ବିବସ୍ୱାନ
ବୁଡିଯାଏ ହେଲେ କୋଟି ତମିସ୍ର
ଆସି ହେଲେ ତାହା ସନ୍ନିଧାନ ।
ଅତି ମାନବର ଅତି ମାନସର
ଅତୀନ୍ଦ୍ରିୟର ରଶ୍ମି ପରେ
ଅବିରତ ସେଇ କବିର ଅମର
ଆତ୍ମା ବିହରେ ହର୍ଷଭରେ ।
ସହଜ ଶକତି ପ୍ରତିଭାର ବଳେ
କ୍ରାନ୍ତ ଦରଶୀ କବିର ମନ
ତାର ଅନନ୍ତ ଶିଳ୍ପ କଳାରେ
ଏ ତ ଆଦର୍ଶ ନିଦର୍ଶନ ।

ସେ ଶକତି ଘେନି ଗଢ଼ି ଉଠେ ତାର
ନବ୍ୟ ଭବ୍ୟ କାବ୍ୟ କଳା
ତେଣୁ ବରେଣ୍ୟ- ଗଣେ ସେ ଗଣ୍ୟ
କୃତି ତା' ସତତ ପୁଣ୍ୟଫଳା ।
ଲେଖିଯାଏ ଯେତେ ଅମର କବି
କମନୀୟ ତାର ଅମର ସାଧନେ
ନମନୀୟ ଶତଦିବ୍ୟ ଛବି ।

* *

## ମିଳନର ଛନ୍ଦ

ଶ୍ରୀ ଭଗୀରଥ ପଟ୍ଟନାୟକ

ମଳୟ ପବନ ହୋଇ ଖେଳିବି ମୁଁ ଖେଳ
ତମ ଯନ୍ତ୍ର ବଲ୍ଲରୀରେ
ଭ୍ରମର ରୂପରେ ସଦା ଗାଇବି ମୁଁ ଗୀତ
ଗୁଞ୍ଜରଣ ଲହରରେ ।।
ସପତ ରଙ୍ଗେ ଧୋଇବ ଆପାଦ ମସ୍ତକ
ସବିତା ମୁଁ ହୋଇ
ଝଟକି ଉଠିବ ତମେ ଏ ସୃଷ୍ଟି ବକ୍ଷରେ
କମନୀୟ ହୋଇ
ଭଳି ଭଳ ଖେଳୁଥିବ ଚାହିଁ ରହିଥିବ
ନିର୍ନିମେଷ ନୟନରେ ।।

ଚନ୍ଦ୍ରମା ରୂପରେ ସଦା ଢାଳଦେବି ଅଙ୍ଗେ
ଶୀତଳ କିରଣ
ଚୁମ୍ବକ ବାଣ ପେଶିବ ଶୀହରଣ ଦୋଳ
ହୋଇ ମୁଁ ମଦନ
ପାରିଜାତ ଗଜରରେ ମଣ୍ଡିବି କବରୀ
ଦେବରାଜ ଅନ୍ତଃପୁରେ ।।
ଶୀକରରେ ଧୋଇଦେବି ହୋଇ ମୁଁ ବାଦଲ
ଓଦା ବସ୍ତ୍ରେ ତନୁ
ଢଳଚଳି ଉକୁଟିବ କମନୀୟ ଅଙ୍ଗ
ନ ଲିଭିବ ମନୁ
ବୀଣା ହୋଇ ରହିଯିବି ତାନ ମାନ ତୋଳି
ତମ କର ଯୁଗଳରେ ।।
ସଂସାର ସାଗର କୋଳେ ତମେ ସିନ୍ଧୁ ଜେମା
ବଇକୁଣ୍ଠୁଁ ଆସି
ପ୍ରଣୟ ଡୋରୀରେ ବାନ୍ଧ ତୋଳନେବି ପ୍ରେମେ
ନଦୀଘୋଷେ ବସି
ବିହରିବା କ୍ଷୀରବଧିରେ ସପ୍ତଫେଣୀ ତଳ୍ପେ
ଜରାମୃତ୍ୟୁ ଶୂନ୍ୟ-ପୁରେ ।।
ସାଗରର କୂଳେ କୂଳେ ଘନ ଝାଉଁ କୁଞ୍ଜେ
ରାସ କ୍ରୀଡା ପାଇଁ
ଶ୍ରୀରାଧା ଗୋ ରହିଁଥିବ ତବ ଆଗମନ
ମୁରଲୀ ବଜାଇ
ନୀଳ ଢେଉ ବକ୍ଷ ଚିରି ମେଳ ଦେବା ନାବ

ବାସ ଅଳକା ପୁରୀରେ ।।

ତାଣ୍ଡବ ନୃତ୍ୟ ମୁଦ୍ରାରେ  କମ୍ପାଇ ମେଦିନୀ
ତେଜ କଇଳାସ
ଉଚ୍ଛନ୍ନ ହୋଇବ ସୃଷ୍ଟି  ଡମ ଡମ ଶବ୍ଦେ
ଚମେ ଗୋ ପୀୟୂଷ
ଅର୍ଦ୍ଧନାରୀଶ୍ୱର ରୂପ  ଦେଖିବ ଜଗତ
ମିଳନର ସୁରେ ସୁରେ ।

*

## ଘୋଷଣା

କୃଷ୍ଣଦାସ

( ଜ୍ବଳିଆ ଜାରି ହୋଇଥିବା ଲୋକଟି ସମ୍ପର୍କରେ )

ଏଠି କଦମ୍ବ ବନ ନାହିଁ
କି ଯମୁନା ନାହିଁ
ଗଛ ବୋଲି ଗଛଟିଏ
ଗବ ଗଛଟିଏ ।। ୧ ।।

ସେଇ ଗଛ ଡାଳରେ
କୌପୀନଟିଏ ଝୁଲାଇବା
ଆଶା ନେଇ

ହଜଥିବା ଲୋକଟି
ରହିଁ ବସିଛି ଯେ ॥ ୨ ॥

ଗଛରେ ଡାଳ କେବେ କଅଁଳ କି ? ॥ ୩ ॥

ଏଠି ବଇଁଶିର ସ୍ୱନ ଶୁଣା ନ ଯାଇ
ଧଇଁ ସଇଁ ଶବ୍ଦ ଶୁଣାଯାଏ
ଜୀବନର ବୋଝ ବୋହି
ଅତିଷ୍ଠ ହୋଇଥିବା ଲୋକଟି
ନିଜ ବୋଝ ତଳେ
ନିଜେ ହଜଯାଏ ॥ ୪ ॥

ଆକାଶରେ ମେଘ
ଧରିତ୍ରୀର ଓଠ ଫଟା
ଶୁଖିଲା ଶୁଖିଲା
ପବନର ବହୁଆଡି ଛାଟେ
ଆକାଶ କି କର୍ମ ଉଠେ
ମେଘ ଚାଲିଗଲା ॥ ୫ ॥

ସୂର୍ଯ୍ୟ ହସି ଦେଲା ଯେ
ବୁଢା ପାଟିରୁ ଲାଳ ଗଡଲା ପରି
ଦି ଝରିଟୋପା
ତଳେ ପଡଗଲା
ଚୁଲା କୁଡା ପରି
ଶୁଖିଲା ବାଲି
ତାକୁ ଚୁଁଟି ନେଲା ॥ ୬ ॥

ସବୁ ପରିଷ୍କାର
	କାଛରୁ ପତ୍ର ବି
	ଶ୍ମଶାନର ନୀରବତା
	ପ୍ରତିଟି ଓଠରେ
	ନିମନ୍ତ୍ରଣକାରୀ ନିଜେ
	ନିଜକୁ ବି ଭୁଲିଯାଏ
		ବିଧିକୁ ପଛରେ ।। ୭ ।।

ହାଟସାରା
	ଅନେକ ପସରା
	ସବୁ ପସରାରେ
	ଚଢେଇଟିଏ
	ହାତ ବଢେଇ ଦେଲେରେ ବାୟା
		ଫୁର୍‌ର୍‌ ।। ୮ ।।

ଘର କୋଣରେ
	ଜାଲ ବୁଣୁଥିବା ବୁଢିଆଣୀଟି
	ନିଜ ଜାଲରେ ବନ୍ଦ ହୋଇ
	ଓହଳ ଥାଏ
		ଆତ୍ମହନ୍ତାର ଶବ ପରି ।। ୯ ।।



# ହର ଶଙ୍କର ଜଣାଣ

ଶ୍ରୀ ପରମବ୍ରହ୍ମ ଖମାରୀ

କୋଶଳ ପ୍ରଦେଶ ବିଖ୍ୟାତ ଠାକୁର ନମୋ ନମ ହରିହର
ଭଗତ ମାନସ ସରୋବର ନୀରେ ତୁମ୍ଭ ନୀଳ ଇନ୍ଦବର ।

ଅଟବୀ ପୂରିତ ସାନୁମାନ କୋଳେ କଲ ପ୍ରଭୁ ପୂଣ୍ୟଧାମ
ପାଳନ ସଂହାର କରତା ଯେଉଁଠି ଧନ୍ୟ ସେହି ପୁତସ୍ଥାନ ।

କୀଟୁଁ ବ୍ରହ୍ମପାଏ ପାଳଥାଅ ଜଣେ ଜଣେ ମହା କର୍ମଦାନୀ
ଭିନ୍ନ ତନୁ ସିନା ଏକ ଆତ୍ମା ତବ ଅଧମ ନ ପାରେ ଜାଣି ।

ଜାଣିଛନ୍ତି ସିଦ୍ଧ ମୁନି ତବ ଗାଥା ମହିମା ମହତ ପଣ
ବୋଲି ନିବସନ୍ତି ତବ ଲୀଳା ଧାମେ ଉର୍ଦ୍ଧ୍ବରେ ତା ପଣ ।।

ତୁମ୍ଭରି ସେବାରେ ନିର୍ଝର ଝରଇ କୁଳୁ କୁଳୁ ତାନ ଧରି
ଯଥା ସଦ୍ୟ ସ୍ନାତା ସ୍ୱୟଂ ସିଦ୍ଧ ବିପ୍ର ଚଳେ ପୂଣ୍ୟ ଶ୍ଳୋକ ସ୍ତୁତି ।

ବନ୍ଧୁର ଶଯ୍ୟାକୁ ନାହିଁ ତାର ଶଙ୍କା ରଙ୍ଗା ଯେଣୁ ତୁମ୍ଭ ପ୍ରତି
ଯଥା ପତିବ୍ରତା ସତୀ ଶିରୋମଣି ସେବଇ ଆପଣା ପତି ।

ତୀର ତରୁ ଲତା ତାହା ପ୍ରସାଦରେ ଲଭନ୍ତି ଦୀର୍ଘ ଜୀବନ
ମହତଙ୍କ ଆଶ୍ରା ନୁହଇ ବିଫଳ ସିଦ୍ଧନ୍ତ ତ ପ୍ରବଚନ ।

ଧନ୍ୟ ସେ ଅଚଳ ପାଏ ପୁଣ୍ୟ ଫଳ ସତତ ତୁମ୍ଭଙ୍କୁ ସେବ
ପତିତ ତାଳିକା ମଧ୍ୟରେ ତା ନାମ ନାହିଁ କହିବ କିଏ ବ ।

ସଜାଇ ଦେଇଛି ତବ ନିଗଭଜନେ କୁସୁମିତ ରମ୍ୟ ଲତା
ବ୍ରତତୀ ସକଳ ଫଳ ପ୍ରସୂନରେ ଅଙ୍ଗେ ବହି ସରସତା ।

କରନ୍ତି ସେବାରେ ହେ ସବୁ ପ୍ରଧାନ ଯାର ନାହିଁ ଛାୟାଦାନୀ
ମଣନ୍ତି ନିଜକୁ ମହା ଭାଗ୍ୟବାନ ତୁମ୍ଭେ ତ ପାରୁଛ ଜାଣି ।

କଳକଣ୍ଠ କଣ୍ଠୀ ଆନ ଦ୍ୱିଜ ଚୟ କରି ମଧୁ କଳରବ
ତବ ଗୁଣଗଣ ଗାଉଥାନ୍ତି ହେଜି ହୃଦେ ଯାହା ସମୁଦ୍‌ଭବ ।

ଶୀତଳ ମରୁତ ଚଳଇ ସତତ ପ୍ରସୂନ ସୌରଭ ଘେନି
ବନଦେବୀ ଅବା ପଠିଆଏ ଭେଟି ଧନ୍ୟ ଏକା ସେହି ଭେନି ।

ଧୀମାନି ପ୍ରକୃତି ନିୟତି ଇଙ୍ଗିତେ ଆଦରଣ ଜ୍ଞାନପାଇ
ଯୋଗ୍ୟତା ପରଖି ଅବିଚଳ ଭାବେ ତବ ପଦ୍ମ-ପାଦ ଧ୍ୟାୟି ।

(ଅବବାହି ଆଦିବାସୀ ନାହିଁ ତାଳଜ କରୁ ପୂଜା ଭେଦ ପାଇ
ପ୍ରକାଶିଛ ସତେ ମାନବ ସମାଜେ ଅସ୍ପୃଶ୍ୟତା ଭାବେ ନାହିଁ ।

ଚହଳ ପଡ଼ଇ ଏ ମହିମା ତବ ବଲାଙ୍ଗିର ଗଡ ଡେଇଁ
କହେ ନରସିଂହେ ସମ୍ବଲପୁରର ପ୍ରତିଧ୍ୱନୀ ହଲେ ନେଇ ।)

ଯାତ୍ରୀ ସମାଗମ ଶିବେ-ଶିବରାତ୍ରେ ବଇଶାଖ ପୂର୍ଣ୍ଣିମାରେ
ତବ ଦରଶନେ ଭକତଙ୍କ ମେଳ ହୁଏ ହର୍ଷ ଅଶ୍ରୁମାରେ ।

ଖୋଳ କରତାଳ ନିନାଦ ଉଠଇ ଗିରିଗୋଳ ସେହି ନାଦେ
ମୁଖରବ ତହିଁ ସହତାଳ ଦେଇ ମିଶେ ଭକ୍ତି ଆହ୍ଲାଦେ ।

ଧନ୍ୟ ନାଦୋପଲ ଧନ୍ୟ ସେ ତୁରୁଳା ଆନ ସନ୍ନିକଟ ଗ୍ରାମ
ବାସୀଙ୍କ ସର୍ବଦା ତବ ଦରଶନେ ହୋଇଛନ୍ତି ଭାଗ୍ୟବାନ ।

କର୍ମ ବନ୍ଧେ ବନ୍ଧା ମୁଁ ପତିତ ପ୍ରଭୁ ! ସଂସାର ଅସାରେ ଭଡ
ଖଡଆଳ ଗଡେ ଉଦର ଭରଣେ ଧାଡ ହୁଏଁ ହରଘଡ ।

ଏହି ଅପରାଧ ନୁହେ କ୍ଷମଣୀୟ ଦଣ୍ଡ ପ୍ରଭୁ ପାର ଯେତେ
ଏତିକି ମାଗୁଣୀ ବଳଦଅ ତାହା ସହିବାକୁ ଅନୁବ୍ରତେ ।

ଦୂରେ ଥିଲେ ସୁଦ୍ଧା ତବ ନାମ ମମ ରସନାରେ କରୁ ଖେଳା
ସଂସାର ସାଗର ପାରି ହେବା ପାଇଁ ମିଳୁ ତବ ପଦ ଭେଳା ।

(ବି:ଦ୍ର:- ବନ୍ଧନୀସ୍ଥ ପଦ ଗୁଡ଼କୁ ବାଦ ଦେଇ ମଧ୍ୟ ଗ୍ରହଣ କରାଯାଇପାରେ)



## ଅବନା ଭଜନ (ନଂ ୧)

ଶ୍ରୀ ରାମକୃଷ୍ଣ ନିଆଲ

ଭଜମନ ଏ ଭଞନ କଦନ
ଜଳଦ ବରନ ଜଳଜ ବଦନ
ନନ୍ଦର ନନ୍ଦନ ମହତଚଜନ ॥ ଭଜମନ ।୧।

କଞ୍ଜନୟନ ଅଞ୍ଜନ ରଞ୍ଜନ
ମରମ ରଞ୍ଜନ ଗରବ ଗଞ୍ଜନ
ଜପ ତପ ଗପ କଥନ, ସରବ, ଅବସ ମନର ରସ ଝରଣ ॥ ।୨।

ଚରଣ କମଳ ଅଧବଳ ଝଲ
ଅଧରର ହସ ଯଶ ବସ ଖଳ
ଭବ ଲଟପଟ ହଟ ନଟବର କରତନ କର ଏତ ରତନ ॥ ।୩।

ଖଗବର ତବ ଗରବ ଧନ
ଗହ୍ୱର ଜନ ପଦର ରଚନ
ମନ ପଦକର ବରନକୁ ବାଛ ରାମକୃଷ୍ଣ କଲା ଗୀତ ରଚନ ॥ ।୪।

## ଅର୍ଚନା ଭଜନ ( ନଂ ୨ )

ହର ହର ବଚନ ଧର  ୨
ରଚନରମନ ...... ଏ ଭଜନ ଧନ
ଶରଣ ତବ ପୟର......... (ପଦ)

ଗଣର ଜନକ  ସରଗ ସଦନ
ଜଲ ବର୍ଜନ  ପରବତ ମନ
ଡମ ଡମ ତବ  ଶବଦ ଝର ...... ॥ ୧ ॥
ମରମ ସପନ  ସମକର ମନ
ଡରଛ ଶମନ  ଭଜଇ ଭଜନ
ମଙ୍ଗଲ ଅସଲ  ଚରଳ ଗରଳ
ତରବର ହର  ହେ ଶଶଧର ହରହର ...... ॥ ୨ ॥

ଗଳପଟ ତବ  ଗରଘର ଏକ
ଅମର ଅକ୍ଷର  ଚହଟ ଚମକ
ଔଷଧ ବଇଦ  ଏ ମନର ଡର
ଦୂର ଡାକେ ନିଆଁଲ ଛାର  ॥ ୩ ॥



# ବିପ୍ଲବିନୀ ରୋଶନ୍ ଆରା

ଶ୍ରୀ କିଶୋର ଚନ୍ଦ୍ର ମହାପାତ୍ର

( ଢାକା ବିଶ୍ୱବିଦ୍ୟାଳୟର ପ୍ରଥମ ବାର୍ଷିକ ଛାତ୍ରୀ କୁମାରୀ ରୋଶନ୍ ଆରା ମାର୍ଚ୍ଚ ୨୭ ତାରିଖ ୧୯୭୧ରେ ବାଙ୍ଗଲା ଦେଶ ସ୍ୱାଧୀନତା ସଂଗ୍ରାମରେ ଝାସ ଦେଇ ଜୀବନୋତ୍ସର୍ଗ କରିଥିଲେ-ତାଙ୍କରି ଅମର ସ୍ମୃତି ଉଦ୍ଦେଶ୍ୟରେ )

ମୁକ୍ତି ପ୍ରଦୀପ ଜଳି ଉଠିଥିଲା କୁମାରୀର ଶାନ୍ତ ବୁକେ
ମନର କପୋତି ଛୁଟି ଚାଲିଥିଲା ପ୍ରତିବନ୍ଧ ତୁଳୁ ଟରି
ସର୍ବାଙ୍ଗ ତାହାର ଥରି ଉଠିଥିଲା ବଙ୍ଗବନ୍ଧୁ ଗୁରୁ ଡାକେ
ନୟନୁ ନିର୍ଗତ ଅଗ୍ନି ସ୍ଫୁଲିଙ୍ଗ ଆସିବ ନାହିଁ ସେ ଫେରି ।
ଢାକା କଲେଜର ପ୍ରଥମ ବାର୍ଷିକ ଛାତ୍ରୀ ରୋଶନ୍ ଆରା
ଦଳିତ ଲାଞ୍ଛିତ ବଙ୍ଗ ଭୂଇଁର ମୁକ୍ତି ପିପାସା ନେଇ
ଶହୀଦମାନଙ୍କ ଆତ୍ମବଳରେ ହୋଇଣ ସେ ଆତ୍ମହରା
ଅରାତି ନିଧନେ ବିପ୍ଳବିନୀ ସାଜି ରଣଭୂମେ ଗଲା ଧାଇଁ
ତାମଶାହୀ ସେନା ବର୍ବରତା ତାର ପରଶେ ଜାଳଛି ନିଆଁ
ବଙ୍ଗମାଟିର ବୀରବାଳା ହୋଇ ଏ ସବୁ ସହନ୍ତା କିଆଁ ?
ରଣଚଣ୍ଡୀକୁ ଦେଶୁ ଜାଗ୍ରତ କରି ବିପ୍ଳବେ ଗଲା ମାତି ।

X X X X X

ସମ୍ମୁଖେ ତାହାର ଗର୍ଜନ କରି ଟେଙ୍କ୍ ଆସଇ ଛୁଟି
ବକ୍ଷେ ତାହାର ଯତନରେ ରଖି ବୋମା ସେ ମମତାମୟୀ

ବଳଦାନ ପାଇଁ ଯଉ ହୁଏ ପର ମୁକ୍ତି ପଥ ଯିବ ଫିଟି
କୋଟିଏ ପ୍ରାଣର ରକ୍ଷା ପାଇଁ ତା ମରଣରେ ଭୟ ନାହିଁ ।
ପଛୁ କିଏ ଡାକେ ରହ ରହ ବାଳା ସମ୍ମୁଖେ 'ଟେଙ୍କ୍' ଆସଇ
ଢାଳ ଅଛି ଯେବେ ଦେଶ ପ୍ରେମ ବହ୍ନି ପଥ କି ଦୁରବ ଆଉ
ଶୁଣି ନ ଶୁଣିଲା ପରି କ୍ଷିପ୍ର ଗତିରେ ଗଲା ସେହୁ ଧାଇଁ
କହିଗଲା-"ଜୀବନ ମୋ ଯାଉ ପଛେ ଦେଶ ମୋର ରହୁ ।"
ବର୍ବର ସୈନିକ ଦୂରୁଁ ଦେଖିଦେଲା ଆସେ ନାରୀ ଏକ
କ୍ରୂର ହସେ ବାହି ନେଲା ଟେଙ୍କ୍ ଯାନଟିକୁ ଅବଳାର ପାଶ
ଲମ୍ଫ ଦେଲା ଟେଙ୍କ୍ ଆଗେ ମୁଖେ ତାର "ଜୟ ବଙ୍ଗଳା" ଡାକ
ବକ୍ଷସ୍ଥିତ ବୋମା ତାର ଗର୍ଜିଉଠି ଯାନ କଲା ନାଶ ।
ଦେଶ ପ୍ରେମ ପାଗଳିନୀ ପୁଞ୍ଛିଗଲା ତାମସାହି ସଙ୍ଗେ
ମୁକ୍ତି ଯଜ୍ଞେ ବଳିଦେଲା ପରାଣଟି ତାର
ମରିବି ମରିନି ସଞ୍ଚରିଲା ରକତ ତା ବିପ୍ଳବୀର ଅଙ୍ଗେ
ମୁକ୍ତିକାମୀ ହୃଦେ ସ୍ପନ୍ଦନ ଭରିଲା ସ୍ମୃତିଟିକ ତାର ।
ଅଶ୍ରୁ ପୋଛ, ପୋଛ ନୟନରୁ ଅଶ୍ରୁ ହେ ବଙ୍ଗ ଜନନୀ
ବୀରମାତା ତୁମେ ଆରେଗା କନ୍ୟା ତବ ମରି କି ପାରଇ ?
ଜୀବନର ଅଶ୍ରୁ ବିଛୁରିଛି ପତି ହୃଦୟେ ମାନିନୀ
ଦେଖୁଛ ତ ବଡାଗ୍ନି ତା କ୍ରୋଧେ ଆଜ ଅରାତି ଦହଇ ।
ତ୍ୟାଗ ଆଦରଣ ପରନାରୀ ଜୀବନର ମୂଳ
ଅପୂର୍ବ ଏ ବଳଦାନେ ଆଜ ଜନନୀ ମହିମା ବଢେ
"ରୋଶନ୍ ଆରା' ଅନ୍ଧକାର ଦୁନିଆଁକୁ ଆଲୋକିତ କଲା
ଭକ୍ତି ଆବେଶେ କୋଟି ମଥା ତୁମ ଚିତା ତଳେ ଗଡେ ।



## ✱ ଅନୁଚନ୍ତା ✱

ରାମଭକ୍ତ ପଣ୍ଡକାର (କୋମନା)

ବଞ୍ଚିବାର ଅଧି ଫେନେ
ଗଢ଼ ଉଠେ ସପନ ସଉଧ
ଛାତିର କଂକ୍ରୀଟ୍ ଚଟାଣ ତଳେ
ପଞ୍ଚବିଂଶତି ଜୀବଗଣ ରଣଭଣ
କହିବାକୁ ଶବ୍ଦମାନେ ଅପାରଗ
ବୁଝେଇବାକୁ ଶବ୍ଦମାନେ ଅସମର୍ଥ
ଶିଖେଇବାକୁ ଶବ୍ଦମାନେ ଶାନ୍ତ
ନିଃସଙ୍ଗ ଶ୍ମଶାନର
ନିର୍ଭର ପ୍ରତିଶ୍ରୁତି ପରେ ବି
ବୟସ ଶୋଉଛି
ପାଣି ଫୋଟକାର ମହଲ ଭିତରେ
ନିଶ୍ଚିନ୍ତରେ ଆରାମରେ



## - ଅର୍ଚ୍ଚନା -

ଶ୍ରୀ ଚଣ୍ଡି ଚରଣ ବଣି



ଦେଉଳେ ବସି ଦିବସ ନିଶି ପୂଜିଲେ ଭଗବାନ
ପାଇବ ବୋଲି ବଳଦା ଡାଳ ଦେଇ ନୈବେଦ୍ୟ ଦାନ । ୧ ।

ଭୂରି ଭୋଜନ ଘୃତ ହବନ ସାଙ୍ଗଣ ପୂଜା ଥାଳ
ଶଙ୍ଖ ଘଣ୍ଟର ଆମୋଦେନାଦେ ଜପିଲେ ଧରି ମାଳ । ୨ ।

ମୂରତୀ ଗଲେ କନକ ହାର ଧୂପ ଚନ୍ଦନ ଦେଲେ
ହୋଇ ପ୍ରଣତ କଲେ ବିନତୀ ଦେବ କି ତହିଁ ମିଳେ ? । ୩ ।

ମହାଭାରତ ସୁଭାଗବତ ଆବର ରାମାୟଣ
ନ ପାଳି କର୍ମେ ଉଚ୍ଚ କଣ୍ଠରେ କରିଲେ ନିତି ଗାନ । ୪ ।

ତିଳକ ଚିତା ଅଠି ସ୍ଥାନରେ ଲେପିତ ହୋଇ ଦେହି
ଜନ ସମାଜ ବର୍ଣ୍ଣି ଋତୁରେ ପୁରାଣ ଗପ କହି । ୫ ।

ପୁରାଣ ଜ୍ଞାନ ହିତୋପଦେଶ ଲୀଳା ରହସ୍ୟମାନ
କେବଳମୁଖେ ଭଷିଲେ ପେଟେଷ ମିଳେ କି ମୁକ୍ତି ଦାନ । ୬ ।

ସକଳ ତୀର୍ଥ କରି ଭ୍ରମଣ କଣ୍ଠେ ଲଗାଇ ମାଳ
ଉଚ୍ଚ ଆସନେ ବସି ଆନନ୍ଦେ ଉଚ୍ଚରେ ଦେଇ ତାଳ । ୭ ।
ଜୟ ଶ୍ରୀରାମ ଗୋବନ୍ଦ ଶ୍ୟାମ ଡାକିଲେ ଦେଖଣାରେ
ତୀର୍ଥ ରଜର ମହିମା ଗାଥା ଶୁଣାଇ ଆନନ୍ଦରେ । ୮ ।

ନ ପାଳି କର୍ମେ କୃଷ୍ଣ ବଚନ କେବଳ ନାମ ଗାନ
କରି କି ଲଭେ ବିଭୁ କରୁଣା ନ କରି ସତ୍ୟକାମ । ୯ ।

ବିଶ୍ୱ ଜନକ ବିଶ୍ୱ ପାଳକ ବିଶ୍ୱ ସନ୍ତାନ ତ୍ରାଣେ
ଆଚାଣ୍ଡାଳର ପୂଜା ଘେନନ୍ତି କ୍ଷୁବ୍ଧ ନୁହନ୍ତି ମନେ । ୧୦ ।

ହୃଦ ମନ୍ଦରେ ବସାଇ ସ୍ମରିରେ ପୂଜ ତା ଆତ୍ମାରାମ
ସତ୍ୟ କର୍ମରେ ଅର୍ଚ୍ଚନା କରି ଚଳା ତୋ କର୍ମଗଣ । ୧୧ ।

କୁରୁକ୍ଷେତ୍ର ଏ କର୍ମଭୂମି ତୋ ରଥ ତୋ ଅରଜୁନ
ଚିନ୍ମୟ କୃଷ୍ଣ ନିଶି ଦିବସେ ରଥେ ତୋ ବିଦ୍ୟମାନ । ୧୨ ।

ପ୍ରଚଣ୍ଡ ଅଶ୍ୱ ପରାୟ ଇନ୍ଦ୍ର ତୋ ନନ୍ଦଘୋଷ ଦେହି
ବିନା ଲଗାମେ ବିପଥେ ଟାଣି କରିବେ ଧରାଶାୟୀ । ୧୩ ।
ଜ୍ଞାନ ଚାବୁକ ନିୟୋଗି ତହିଁ ଇନ୍ଦ୍ର ଅଧୀନ କରି
ସଂଯମୀ ବୀର ତୋ କର୍ମ ରଥେ ସତର୍କେ ଥିବୁ ଧରି । ୧୪ ।
ବାସନା ରୂପୀ ଘୋର ମକର ବ୍ୟାଦାନ ମୁଖେ ସ୍ଥିତ
ଲକ୍ଷ୍ୟ ବିଚ୍ୟୁତ ହେଲେ ହେ ରଥି ହେବୁ ତୁ କବଳିତ । ୧୫ ।
କୁ କର୍ମ କରି ନାମ ଗାୟନେ ଲଭିବୁ ନାହିଁ ଶାନ୍ତି
ସତ୍ କର୍ମ ଏକା ସ୍ୱର୍ଗୀୟ ପଥ ମାନବ ମହାମତୀ । ୧୬ ।
ସୁକର୍ମ ତୋର ଉତ୍ତମ ଗତି ଜ୍ୱଳନ୍ତ ଧର୍ମ ଏହି
ମିଳଇ ଶ୍ରମେ ନିର୍ଭଳା ସତ୍ୟ ସାଧିଲେ ଭବେ ପାଇ । ୧୭ ।
ପୂତ କରମେ ହୃଦୟ ମନ ନିୟୋଜ ହେବୁ ସ୍ଥିର
ଉଦଣ୍ଡ ଇନ୍ଦ୍ର ଶାନ୍ତ ଭଜବ ନୋହିବ ବ୍ୟଭିଚାର । ୧୮ ।
କର୍ମାନୁସାରେ ଭାଗ୍ୟ ଚକ୍ର ହୁଅଇ ସୁନିର୍ମାଣ
ସ୍ୱର୍ଗ ନରକ ଗତି ଦାୟକ ଜୀବର କର୍ମଗୁଣ । ୧୯ ।
ଜନ୍ମ ସନ୍ୟାସ ଜାଣ ପ୍ରବୀର କର୍ମେ ମିଳଇ ଧର୍ମ
ବାହ୍ୟ ଭଜନେ ଉପଢୌକନେ ମିଳେ ନା ଭଗବାନ । ୨୦ ।
ସାଧିଲେ ଏହି କର୍ତ୍ତବ୍ୟ ପଥେ ଦୃଢ ହୃଦୟେ ଧ୍ୟାୟି
ଏ ଭବାର୍ଣ୍ଣବୁ ତ୍ରିତାପାନଳୁ ଅବଶ୍ୟ ହେବୁ ତ୍ରାହି । ୨୧ ।
କର୍ମ ଯଜ୍ଞ ଏ ଗରୀଷ୍ଠ ଧର୍ମ ସାଧ ସ୍ୱକୀୟ ହିତେ
ରାଷ୍ଟ୍ର ଉନ୍ନତ ହେବ ନିଶ୍ଚିତ ଯିବ ଜୀବନ ସାଥେ । ୨୨ ।



# ✱ ପ୍ରିୟା ✱

ଶ୍ରୀ ନାରୟଣ ମିଶ୍ର

ଝାଇଁ ଝାଇଁ ମାଦଳ ବାଜେ
ଝୁମି ଝୁମି ପୁଲକ ଜାଗେ
ଆସ ଆମେ ଦୁହେଁ ହଜିଯିବା
ମଳୟର ସାଥେ ମିଶି ଯିବା
ଫଗୁଣର ଫୁଲ ସଙ୍ଗେ
ମିଳନ ବଇଁଶୀ ବାଜେ
ଏଇ ମନ କାହିଁକି ନ ବୁଝେ ।୦।

ପ୍ରେମ ପକ୍ଷୀ ଆମେ ଦୁନିଆଁରେ
ଡେଣା ମେଲ ଉଡଯିବା ଦୂରେ
ଆଙ୍କି ଦେବି ସୋହାଗ ସିନ୍ଦୂର
ବାହୁ ବନ୍ଧନରେ ଥିବ ମୋର
ହୃଦୟ ଦେଇ ଦେବ ମୋତେ
ପ୍ରଣୟ ହୋଇବ ଗୁପତେ
ପ୍ରୀତିର ଯେ ପୂଜାରୀ ମୁଁ
ଅଭିସାର ଆଜି ସାଜେ ।୧।

ମୁଁ ଯେ ଚାନ୍ଦ ତୁମେ ନୀଳକଇଁ
ଦୂରେ ଥାଇ ଯାଅ ମତେ ଛୁଇଁ
ତୁମେ ଏକ ମଧୁର ଝରଣା
ସରସ ସୁନ୍ଦର ତୁମେ କିନା

ଆଖିରେ ମନର ତାହାଣୀ
ଜୀବନେ ନ ଥିଲି ମୁଁ ଜାଣି
ତୁମ ନୀଳ ଆଖି ଦୁଇ
କଜ୍ଜ୍ୱଳ ଧାରରେ ଯାଚେ । ୨ ।
ଝୁଲୁ ଝୁଲୁ ଚଳତି ପବନ
ମନେ ଜାଗି ଉଠେ ଶୀହରଣ
ଆହା ତୁମେ ନାହିଁ ପାଶେ ମୋର
ବୀଣାରେ ମୋ ନାହିଁ ଆଉ ସୁର
ତୁମେ କି ଭୁଲିଗଲ ମୋତେ
କରୁଛ ଛଳନା କି ସତେ ?
ଅଭିମାନୀ ହୁଅ ନାହିଁ
ଖୋଜୁଛ ତୁମକୁ ମୁଁ ଯେ । ୩ ।

**

## ଜୀବନର ମୂଳ

ଶ୍ରୀ କ୍ଷୀରସିନ୍ଧୁ ନିଆଲ

( ଯଗ - ଆଷାଢ଼ଶୁକ୍ଳ ବାଣୀ )

ସୃଷ୍ଟି ପୂର୍ବେ ବିଭୁ ଶ୍ରୁତି ପ୍ରକାଶ
ସ୍ୱୟମ୍ଭୁ କରେ ଦେଲେ ହୋଇ ତୋଷ ।
ସେ ଜ୍ଞାନ ଲଭି ଦୁହେଁ ପରମେଷ୍ଠି
ଦୃଶ୍ୟ ଅଦୃଶ୍ୟ ସର୍ବ କଲେ ସୃଷ୍ଟି

ଜୀବନର ମୂଳ

ଶିକ୍ଷା ଅଟଇ ସଂସାରେ କେବଳ ।୧।
ଯେ ଶିକ୍ଷା ପ୍ରାଣୀ ହୃଦେ କିଛି କିଛୁ
ଅଛୁ ବହି ଯାକୁ ଯେତେ ଦେଇଛି ।
ସର୍ବ ଶ୍ରେଷ୍ଠ ଯେଣୁ ଅଟନ୍ତି ନର
ଏଣୁ ଲଭିଲେ ସେ ଜ୍ଞାନ ଭଣ୍ଡାର

ଜୀବନର ମୂଳ

ଶିକ୍ଷା ଅଟଇ ସଂସାରେ କେବଳ ।୨।
ଶିକ୍ଷା ବଳେ ସଂସାରେ ଗମେ ନର
ଚନ୍ଦ୍ର ମଣ୍ଡଳ ମଙ୍ଗଳ ଗ୍ରହର ।
ସମ୍ବାଦ ବୁଝୁଅଛି ମର୍ତ୍ତେ ବସି
ଶିକ୍ଷା ସାଧନେ ହୁଏ ଦୂରଦର୍ଶୀ ।

ଜୀବନର ମୂଳ

ଶିକ୍ଷା ଅଟଇ ସଂସାରେ କେବଳ ।୩।
ଶିକ୍ଷା ବଳେ ସମଗ୍ର ପୃଥ୍ବୀର
ସର୍ବ ସମାଚାର ବୁଝଇ ନର ।
ଶିକ୍ଷା ବଳେ ସୁନ୍ଦର ନୃତ୍ୟ ଗୀତ
ଶ୍ରବଣ କରେ ହୋଇ ଆନନ୍ଦିତ ।

ଜୀବନର ମୂଳ

ଶିକ୍ଷା ଅଟଇ ସଂସାରେ କେବଳ ।୪।
ଶିକ୍ଷା ବଳେ ଚୋର ଧରଇ ଶ୍ୱାନ
ଶୁଦ୍ଧପିକ ପଢନ୍ତି ରାମ ନାମ ।
କରୀ ପରେ ହରି କରଇ ଲୀଳା
ତା ପରେ ଶ୍ୱାନ ସଙ୍ଗେ ଖେଳେ ପିଲା ।

ଜୀବନର ମୂଳ
ଶିକ୍ଷା ଅଟଇ ସଂସାରେ କେବଳ ।୫।

ଶିକ୍ଷା ବଳେ ଶୂଦ୍ର ହୁଏ ବ୍ରାହ୍ମଣ
ଶିକ୍ଷା ବିନେ ବ୍ରାହ୍ମଣ ଶୂଦ୍ରୁଁ ହୀନ
ସୁଶିକ୍ଷା ଜୀବନକୁ କରେ ଉଜ୍ଜ୍ୱଳ
କୁଶିକ୍ଷା ଜୀବନର ଅଟେ କାଳ ।
ଜୀବନର ମୂଳ
ଶିକ୍ଷା ଅଟଇ ସଂସାରେ କେବଳ ।୬।

ଏଣୁ ସାଧୁ ସଙ୍ଗ କର ସୁମନ
ଆନନ୍ଦେ କର ସୁଶିକ୍ଷା ସାଧନ ।
କାମ କ୍ରୋଧ ଲୋଭ ମୋହକୁ ଜୟ
କରି ଜୀବନ କର ଦୀପ୍ତିମୟ ।
ଜୀବନର ମୂଳ
ଶିକ୍ଷା ଅଟଇ ସଂସାରେ କେବଳ ।୭।

ଜନକ ଜନନୀ ସାବଧାନରେ
ସୁଶିକ୍ଷା ଦାନ ଦିଅ ସନ୍ତାନରେ
ଶ୍ରଦ୍ଧା ପ୍ରେମ ଭକ୍ତି ହେଲେ ଜାଗ୍ରତ
ଗୁରୁଜ୍ଞାନେ ଶିକ୍ଷା ହେବ ପ୍ରାପତ ।
ଜୀବନର ମୂଳ
ଶିକ୍ଷା ଅଟଇ ସଂସାରେ କେବଳ ୮।

ଶିକ୍ଷା ଅଭାବେ କ୍ଷୀରସିନ୍ଧୁ ହୀନ
ଆବିଳ ସ୍ରୋତେ ଭାସେ ନିଶିଦିନ
ରାମ ନାମ ଭବ ସିନ୍ଧୁ ତରଣୀ

ସର୍ବ ଶିକ୍ଷାର ମୂଳ ନାମ ଖଣି ।
ଜୀବନର ମୂଳ
ଶିକ୍ଷା ଅଟଇ ସଂସାରେ କେବଳ । ୯ ।

## ✱ ସ୍ମରଣିକା ✱

ଶ୍ରୀ ପଦ୍ମଲୋଚନ ପାଣ୍ଡା

ସ୍ୱାର୍ଥତ୍ୟାଗୀ ସତ୍ୟବାଦୀ ହେ ମହାତ୍ମା ଗାନ୍ଧି ।
ସଭ୍ୟତା ମାନବକତା ଥିଲ କି ସଂପାଦ । ୨ ।
ମାନବର ନୈତିକତା ସାତ୍ତ୍ୱିକ ବିସ୍ତର ।
ସ୍ୱର୍ଗୀୟ ବୈଭବ ଯେତେ ଥିଲ ତୁମ୍ଭଠାର । ୨ ।
ବ୍ରାହ୍ମଣ ବା କ୍ଷତ୍ରିୟ ବା ବୈଶ୍ୟ ଶୂଦ୍ର ।
ମଇତ୍ର, ଅରତି, ଜ୍ଞାତି, ବନ୍ଧୁ ସହୋଦର । ୩ ।
କଉଣସି ସଂପ୍ରଦାୟ ଜାତି କୁଳାସ୍ତର ।
ପରିଚୟ ନେବା ପ୍ରଥା ନ ଥିଲ ତୁମ୍ଭର । ୪ ।
ମଣୁଥିଲ ତୁଷ୍ଟ ନୈହ ଦରିଦ୍ର ଧନୀକ ।
ପ୍ରେମ, ପୁଣ୍ୟ ସମ୍ମାନର ଓଜନରେ ଏକ । ୫ ।
ହୃଦ ଉଦ୍ୟାନରେ ତୁମ୍ଭ ନ ଥିଲ ଢଗାଇ ।
ପରପର ଭେଦାଭେଦ ଭବ ଘୁଞ୍ଚ ଯାଇ । ୬ ।
ନ ଲଗଇ ପଙ୍କ ଯଥା ମଲ୍ଲୀ ଲତା ଅଙ୍ଗେ ।
ନ ଥିଲ କଳଙ୍କ ତଥା ତୁମ୍ଭର ଶ୍ରୀଅଙ୍ଗେ । ୭ ।
ଦୟା, ବିନୟ, ଅହିଂସା, କ୍ଷମା, ଶାନ୍ତ, ସତ ।
ଉପକାର, ସହିଷ୍ଣୁତା ପୁଣି ହରି ଭକ୍ତ । ୮ ।

ସୁବିବେକ, ସୁଗୁଣିକ, ଭବୁକ, ଧାର୍ମିକ ।
ନିରପେକ୍ଷ, କାର୍ଯ୍ୟଦକ୍ଷ, ନିର୍ଭୀକ, ଦାମ୍ଭିକ ।୯।

ବାକ୍ୟାବଳରେ ତୁମ୍ଭର ମାଧୁର୍ଯ୍ୟ ଲଳତ ।
ନିହିତ ଥାଇ ଶ୍ରୋତାଙ୍କୁ କରିଛି ମୋହିତ ।୧୦।

ଏହି ହେତୁ ପରିଚୟ ପାଇଲ ଜଗତ ।
ମହା ପୁରୁଷରେ ତୁମ୍ଭେ ହୋଇଲେ ଖ୍ୟାତ ।୧୧।

ସତ୍ୟ ଉପଦେଶ ଦେଇଥିଲ କାହ କାହ ।
ଶିଖାଇଲ ରାଜନୀତି ତାରକ ମନ୍ତ୍ରାଦି ।୧୨।

କିନ୍ତୁ ହୃଦ ପିଞ୍ଜରରେ ନୀତିପକ୍ଷୀ କାହିଁ ।
ରଖି ପାରି ନ ପାରୁଛୁଁ ଆଳସ୍ୟରେ ଥାଇ ।୧୩।

ତାଣୁଁ ସ୍ୱରଗରେ ସୁଦ୍ଧା ନ ଥାଇ ନିଶ୍ଚିନ୍ତେ ।
କରୁଥିବ ସେବାଗତେ ଦାବୀ ଆମ୍ଭ ହିତେ ।୧୪।

ରହୁଁଥିବ ଶ୍ରୀହରିଙ୍କୁ ଲୋଡକ ଲୋଚନେ ।
କହୁଥିବ ଜଗତର କଲ୍ୟାଣ କାରଣେ ।୧୫।

ସୁଦୃଷ୍ଟି ସକାଶେ ଭୂମଣ୍ଡଳେ ଆଖଣ୍ଡଳେ ।
କରୁଥିବ ଅନୁରୋଧ ସଙ୍ଗତେ ଗୋଖଲେ ।୧୬।

ଘେନି ଦଳବଳ ଗମୁଥିବ ବନ୍ଧୁଆଳେ ।
ପ୍ରତିନିଧି ରୂପେ ବାଛି ଲାଲ ବାଳ ପାଳ ।୧୭।

ସ୍ୱାଧୀନତା ଯଜ୍ଞେ ବନ୍ଦୀ ହୋଇ ସ୍ୱର୍ଗଆଳ ।
ଗଲେ ଯେ କି କରି ଦେଶ ମାତା ମୁଖୋଜ୍ଜ୍ୱଳ ।୧୮।

ପରତେ ହେଉଛି ଫେରି ଆସି ମରତରେ ।
ଜଡୁଛବ ସଙ୍କଳପ ଜଗତ ହିତରେ ।୧୯।

ଯେ ଭଳି ମାନବ ସ୍ଥଳେ ସେ ଭଳ ପଥରେ ।
ସ୍ୱରଗରେ ଥାଉ ଅବା ଥାଉ ମରତରେ । ୨୦ ।

✱✱

## ଏକଇ ବୃକ୍ଷେ ଶତପକ୍ଷୀ

ଶ୍ରୀ ଅଭୟ ଚରଣ ଚଳନ

ଭଗବତ ଗ୍ରନ୍ଥେ ପଢ଼ିଲି ବୃତ୍ତାନ୍ତ
ଏକ ବୃକ୍ଷେ ବେନି ସୁପର୍ଣ୍ଣ ଦୃଷ୍ଟାନ୍ତ ।
ଭଳ ଭଳି ମର୍ମ ନ ପାଇଲି ଅନ୍ତ
ମାୟା ନିର୍ବିକାର ଅଟଇ କେମନ୍ତ ?
ପ୍ରକୃତି ନିର୍ମାଣ ମାନବ ଜୀବନ
ଲାଗିଅଛି କ୍ରମ ଉତ୍‌ଥାନ ପତନ ।
ସଞ୍ଚିତ ପ୍ରକୃତି ବେଳକାଳ ଉଣ୍ଡି
ମହାଜ୍ଞାନୀ ଜନେ ଦେଇଥାଏ ଭଣ୍ଡି ।
ଜାଣେ କି ଶିଉଳ ବଟଦ୍ରୁମ କଥା
ମୋ ପକ୍ଷେ ଏ ଜ୍ଞାନ ଅଟଇ ତ ତଥା ।
ବୁଲୁଥିଲି ଦିନେ ପ୍ରଭାତ ଭ୍ରମଣେ
ଥିଲେ ଜଣେ ବନ୍ଧୁ ସେ ଦନ ଗହଣେ ।
ସମ୍ମୁଖେ ଦେଖିଲି ପବିତ୍ର ପିପ୍ପଳ
କର୍ଣ୍ଣେ ମୋ ବାଜିଲା ମଧୁର କାକଳ ।
ଅନାଇ ଦେଖିଲି ହରଡ ଶତେକ
ଫଳ ଭେଦ୍ୟ ଆଶେ ଚେଷ୍ଟିତ ପ୍ରତ୍ୟେକ ।

କୁତୂହଳ ମନେ ରହିଁ ଏକ ଲକ୍ଷ୍ୟ
ଚୀର ଯୋଗ୍ୟା ଫଳ ଦେଖିଲ ଏ ବୃକ୍ଷେ ।
ଥୋଡେ ପକ୍ଷୀ ମତ୍ତ ନିଜ ଚାହୁ ବଳେ
ପ୍ରଘଚ ବସ୍ତାବିହନ୍ତ ସବୁ ଫଳେ ।
ମାତ୍ର ଦଳି ନଷ୍ଟ କରୁଛନ୍ତି ସିନା
ଅନ୍ୟ ପାଇଁ ନାହିଁ ଟିକିଏ ଶୋଚନା ।
ବାକୀ ପକ୍ଷୀ ଯାକ ଦୁର୍ବଳ ଦଳତ
ବଳବାନ ଦେଖି ହୁନ୍ତ ତ୍ରସ୍ତଭୀତ ।
ବଳବାନେ ଥିବା କଷି ଫଳ ଖାଇ
ଜୀବନ ବଞ୍ଚାନ୍ତି ପ୍ରକୃତି ମେଣ୍ଟାଇ ।
ବେଳେ ବେଳେ ପକ୍ୱ ଫଳ ରସ ଆଶେ
ସତର୍କେ ବସନ୍ତି ଯାଇ ଅନ୍ୟ ପାଶେ ।
ଜାତି ପ୍ରେମଭବ ନ ରଖି ମନରେ
ତଡନ୍ତି ଦୁର୍ବଳେ ପ୍ରହାରି ଚଞ୍ଚୁରେ ।
ନିଜ ପୂର୍ବ ସ୍ଥାନେ ବସନ୍ତି ବିକଳେ
ପ୍ରତିବାଦ ପନ୍ଥା ବଣ୍ଟୁ ନି ଦୁର୍ବଳେ ।
ଚମକି କହିଲୁ ବିଧି ବିଡମ୍ବନା
ଏ ପକ୍ଷୀ ସେ ପକ୍ଷୀ କେମନ୍ତ ସୃଜନା ?
ବନ୍ଧୁଙ୍କୁ କହିଲ ଦେଖ ଏହି ରୀତି
ଦୁର୍ବଳର ସଦା ସବଳରେ ଭୀତି ।
ନିର୍ବିକାର ବନ୍ଧୁ ନ କହିଲେ କିଛି
ଦେଖିଲି ନେତ୍ରରୁ ଲୋତକ ଝରୁଛି ।
ମୋ ହୃଦୟ କିନ୍ତୁ ପାଷାଣେ ଗଠିତ
ଅନ୍ୟ ଦୁଃଖେ କେବେ ନ ହୁଏ ଦରିଦ୍ର ।

ଭଗବତ ଧର୍ମ ଗଳ୍ପ କେଉଁ ଆଡେ
ପଡ଼ଅଛି ମୁହିଁ ଅଲୋକ ଉହାଡେ ।

-*-

# ଅନ୍ତିମ ବିଦାୟ

ଇରଫାନ୍ ମହମ୍ମଦ

ପ୍ରିୟତମା ! ଥିବ ଯଦି ମୃତ୍ୟୁବେଳେ ଗ୍ରାମେ
ଆସିବ ନିଶ୍ଚୟ ଲୁହ ଲୁଗ୍ଭଇ ନୟନେ ।
ପଡ଼ିଲେ ମୋ ମୃତ ଦେହ ପରେ ତୁମ ହାତ
ବାହାରିବ ସ୍ୱତଃ ହସ୍ତ କଂପନେ ନ ରହି ।।
ପଳାଇବେ କୁଟୁମ୍ବେ ମୋ ଭୂତପ୍ରେତ ଭୟେ
ଜାଣେ, ତୁମେ ଏକାକିନୀ ରହିବ ନିର୍ଭୟେ ।
ଦେଖିବ କଫନ ଖୋଲି ଆସ୍ୟ ନିକଟରେ
ଦିଶିବ ତୁମର ବାଲ୍ୟ ଛବି ମୋ ଚକ୍ଷୁରେ ।।
ଖେଳିଯିବ କ୍ଷଣକରେ 'ସେ ଦିନ' ସ୍ମୃତିରେ
"ଆମରଣ ଭିନ୍ନ ନୋହି ରହିବୁଁ ସଂସାରେ ।
ପଣ କରଥିଲୁଁ ଦୁହେଁ ଗତ ଜୀବନରେ"
କୃତଘ୍ନ ନୁହେଁ, ଜାଣିବ ଦେଖି ସ୍ୱାଗତରେ ।।
ଅପେକ୍ଷି ନାହିଁ ତୁମକୁ କେବେ ଜୀବନରେ
ଦେବ ଗୋ ବିଦାୟ ଭବୁଁ ଭିଜଣ ଅଙ୍ଗରେ ?

-*-

# କୋଣାର୍କ କନ୍ଦେ

ଶ୍ରୀ ବାବୁଲାଲ ଅଗ୍ରୱାଲ

ଚନ୍ଦ୍ରଭାଗାର ନଈକୂଳ
ମନ୍ଦ ମନ୍ଦ ସମୀର
ଛିଡ଼ା ହୋଇ, ପଥରର ମୂରତିଟିଏ
ଇଙ୍ଗିତ କରି ନିଜର ସେହି ଭଗ୍ନାବଶେଷକୁ
କହିଯାଏ, ବନ୍ଧୁ ମୋର ।
ଅମର ବି ମର ହେବ........ସମୟ ଆସୁଛି ।
ଆଉ ଛାଡ଼ଯାଏ ମନରେ ଏହି ପ୍ରଶ୍ନ ---------
କିପରି ? ...... କାହିଁକି ?
ଠିକ୍ ଏତିକି ବେଳେ ଗାଇ ଉଠେ
ଅମର ଶିଳ୍ପୀର ମରଣର ଗାଥା
କୋଣାର୍କର ସେହି ଭଗ୍ନସ୍ତୁପ
ଦୁଃଖ ଲାଗେ ଆଜିବି ଏହି ପଙ୍ଗୁ ଶାସନ
କି ଅତ୍ୟାଚାର, ବୋଧ ନିଷ୍ଠୁର ଇଂରେଜ.........
ଅଭିନୟ କରେ ଏହିଁ କୋଣାର୍କ
ବାଜି ରାଉତର ଭୂମିକାରେ ............
ଗୋଟିଏ ରକ୍ତ ବଳିଦାନରେ ସହସ୍ର ରକ୍ଷା
ଏକ ଚେତନାର ଉତ୍ସ.... ।



# ମୂକ ଇତିହାସ

ଶ୍ରୀ ବଳଭଦ୍ର ମହାନ୍ତି

ଓଃ କି ଶୀତ ! ଗଣି ଗଣି ପାହୁଲକୁ
ପହଞ୍ଚିଲି ଗାଁ ମୁଣ୍ଡ ବରଗଛ କଡେ ।
ବିଛେଇ ହୋଇ ପଡଛ କାକରର ପ୍ରତି ଓସ ବିନ୍ଦୁ
ଗୁଣୁ ଗୁଣୁ ଗାଉଥିଲ ଭୈରବୀର ସୁର ।
ହଠାତ୍ ଏକ ଶବ୍ଦ ସ୍ରୋତ ଖେଲିଗଲା କାନବାଟ ଦେଇ
ମୁକୁଳା ଆକାଶକୁ ଅନାଇ ଦେଲି ।
ଏଁ ଏ କଣ ? କେତେ ଯାତ୍ରୀ ଧାଡ ବାନ୍ଧି ଚାଲିଗଲେ ।
ଉଏଟିଙ୍ଗ ରୁମରୁ ଅର୍କେଟେ ଛାଣିଆଁ ଚତର ହୋଇ ।
ମନେ ମନେ କାହିଁକି କେଜାଣି ସୃଷ୍ଟି କଲି ପ୍ରଶ୍ନର ପାହାଚ
ମୁଁ ତ ନୁହେ ଦଶାନନ ଅବା ବିଶ୍ୱାମିତ୍ର
କିମ୍ବା ନୁହେଁ ଏ ଯୁଗର ପାଓ୍ୱାର ଥିବା କେଉଁ ଏକ ମନ୍ତ୍ରୀ
ନୁହଇ ଜେଦାପି ହାତେ ପିସ୍ତଲ ଭଗ ପୁଳସ ସାହେବ ।
ନୁହେଁ ତ ଯାଦୁବାଲା କେଉଁ ଇଲକାର
ଥୁ ଏକ୍ସ ରମ୍ ଅବା ନାହିଁ ମୋର ହାତେ ।
ନୁହଇ ତ ଲମ୍ବା ଲମ୍ବା ବାଳ ଥିବା ଏ ଯୁଗର ହିପ୍‌ପୀ
ତାପରେ
ରାକ୍ଷସ ମେଳାଇ ଦେଇଛି ତାର ଦୀର୍ଘ କଳେବର
ମାତ୍ର ନୁହଇ ଭକ୍ଷକ
ଅନ୍ୟାୟ ଅତ୍ୟାଚାରର ତାଙ୍କ... ଫିସାଦ
କିଏ କେବେ କହିବାର ଶୁଣି ନାହିଁ ମୁହିଁ ।

ଛ କୋଡ଼ି ବରଷ ବୁଢ଼ା ନାଥୁଆ ପଣ୍ଡିତେ
କେଉଁ ଯୁଗ କେତେ ଗପ କହିଯାନ୍ତି ଛାଏଁ ଛାଏଁ
ବାଟୁଳି ବାଢେନା । କିନ୍ତୁ ଦାଣ୍ଡଟାକୁ ଅଣ୍ଡାଳି ଅଣ୍ଡାଳି କହନ୍ତ
କେଉଁ କାଳରୁ କେତେ ପକ୍ଷୀ ବସା ବାନ୍ଧ
ରହନ୍ତ ଏ ଗଛାସ କୋଳରେ ।
ଠେଳ ନାହିଁ ହାଇହିଲ ବାଟାରେ ଜାହାକୁ ।
ବିଭିନ୍ନ ଦେଶ ଫଉଜ ଉଡଆସି ଉପସ୍ଥିତ ହୁଅନ୍ତ ଏଠାରେ
ଆଶ୍ରାଦିଏ ସମସ୍ତଙ୍କୁ ନ ଥାଇ ଦରଦ
କ୍ଷେତ୍ରୁ ଉଳ ଠିଆ ହୋଇ ଦେଖିଛି ସେ ଏ ଭୂଇଁର ଅନେକ ଘଟଣା
ଘମା ଘୋଟ ଧୂମଧାମ ସହ ଯେଉଁ ଦିନ ଜମିଦାର
ବାହା ହୋଇ ହାତୀରେ ଆସିଥିଲ,
ବେଣ୍ଡ ଶଙ୍ଖ ଭେରୀ ତୁରୀ ବିରଟ ଫଉଜ
ଆତସ ବାଜିର ଶବ୍ଦେ ଆକାଶ ଫାଟିଛି
ସ୍ୱ ଆଖିରେ ଦେଖିଛି ସେ ଦିନ
ଦେଶ ସେବୀ ରଥଙ୍କର ଶବଟାକୁ
ବୋହି ନେଲେ କେତେ ଜଣ ରାମ ନାମ କହି ।
ବୃକ୍ଷ ପଙ୍କରୁ ମଶାଣି ଭୂଇଁକୁ
ଆଜିପରି ମନେ ହୁଏ ମହାତ୍ମାଙ୍କ ସତଫୁଲ ବୋହୁ
ଗଣ୍ଡ ହୋଇ ଛେଚି ଦେଲ ବିହାଚ ଗୁରିଗଣ୍ଡା ଶଙ୍ଖା
ଭେ ଭେ କାନ୍ଦଥିଲ ଆକାଶ ଫଟାଇ
ଏଇ ଗାଁ କଡେ ଥାଇ ତୁନି ତୁନି
ଦେଖିଅଛୁ ମଣିଷର ଉତ୍ଥାନ ପତନ
ସମୁଦ୍ରର ଢେଉ ପରି ଏକ ପରେ ଏକ
ତୁମେ ହିଁ ତ ଏ ଖିଆଲି ଜାତିର ମୂକ ଇତିହାସ ।

-✱-

# ମୋ ଜୀବନର ଏକ ଅଧ୍ୟାୟ

ଶ୍ରୀ ସୁଧାକର ମହାନ୍ତ

ମୋ ଆଢ ଖୋଜୁଛି ମୋତେ
ଏକ ବେନାମି ସ୍ୱପ୍ନ ଇଲାକାର ଗଳିକନ୍ଦ ଭିତରେ ।
ଯେତେ କି ଯାଉଛି ହୁଡ ତୁମ ଗାଁ କିଆ ବଣ
ଗୋହରୀ ବାଟରେ
ଅବା ମୁଁ ଗଲି କି ଭସି ଅଶାନ୍ତ ସମୁଦ୍ରର
ଗୋଟିକ ପରେ ଗୋଟିଏ ଲହରୀର
ବେଳା ବୁକୁରେ ।
ମୋର ଜୀବନ ସମୁଦ୍ରରେ ବିପଦ ତରଙ୍ଗର
ବିଶ୍ରାମ ନାହିଁ ବିରମ ନାହିଁ ।
ଗୋଟିକ ପରେ ଗୋଟିଏ ମାଡ ଆସିଛି ଭୟଙ୍କର
ଗର୍ଜ୍ଜନ କରି ମୋତେ ଗ୍ରାସ କରିବାକୁ କୁମ୍ଭକର୍ଣ୍ଣର
ଉଦ୍ଭଟ ରୂପ ଧରି
ଯେମିତି ମୁଁ ଏକ ଷ୍ଟେଚୁ
ମୁଁ କିନ୍ତୁ ଶୋଇନି
ଦୁଃଖର ଦ୍ରାଘିମା ଡେଇଁ ଆଶାର ଅକ୍ଷାଂଶ
ପାଖେ ଗଢ଼ିବ ଚୁନି ଚୁନି ତାରାର ପଣତ କାନିରେ
ମୁଁ ଶୋଇଛି
ଭିଡ଼ିଛୁ ସ୍ନେହ ଭିଡ଼ା
ଶୀତ ସକାଳ ଶାନ୍ତ ସ୍ନିଗ୍ଧ, କୋମଳ
ଅଳସ ଖରାରେ

ସେ ଖର ଖେଳୁଥିବ, ଲୋଟୁଥିବ;
ତୁମ ମନ ମଧ୍ୟାହ୍ନରେ ହାଣ୍ଡିଶାଳ ଝରକା ଫାଙ୍କରେ
ଶରଧା ବାଲିକୁ ମାପି ସ୍ମୃତିର ଶାମୁକାରେ
ମୁଁ ଝୁଲିଛି ଝୁଲନ୍ତ ବନ୍ଧୁ ଜୀବନର
ଅମଡା ବାଟରେ ।

-✱-

## ମୃତ୍ୟୁ ପଥର ନିର୍ଭୀକ ଯାତ୍ରୀ

ଡାକ୍ତର କେପ୍‌ଟେନ୍ ଦୀନବନ୍ଧୁ ପଟ୍ଟନାୟକ

ମୃତ୍ୟୁ-ବଳୟ-ବ୍ୟାପ୍ତ ପରିଧି ଅଗ୍ରେ ବଢ଼ିଯା ଯାତ୍ରୀ
ପଶ୍ଚାତେ ତବ ନିସୀମ ରୁଦ୍ର ନିବିଡ ଦୁର୍ଦ୍ଧର୍ଷ ରାତ୍ରି
ଘନ କୁଜ୍‌ଝଟୀ ପାର୍ଶ୍ୱେ ରଚନ୍ତି ବିକଟ-ମରଣ ଧାର
ପୃଷ୍ଠେ ବଦ୍ଧ୍ୟତ୍ ଅର୍ଗଳ-ବନ୍ଧ-ଦୁର୍ଦ୍ଦମ- ରୁଦ୍ଧ-କାରା
ବଢ଼ି ଯା ନିର୍ଭୀକ ଯାତ୍ରୀ
ଜଟିଳ ବର୍ତ୍ମ ଭେଦି ଗରଜେ ଗଭୀର ନିଝୁମ ରାତି ।

ଆଶା ଅନ୍ତରଳେ ନିରାଶା-ସାଗର ଜଳାଏ ବାଡବା ଶିଖା
ବାସନା ଅନନ୍ତ ମହା ବ୍ୟୋମତଳେ ସ୍ତୂପୀକୃତ ନିହାରିକା
ଶତ କଙ୍କାଳ ଅଗ୍ନି ଝଲସେ ତାଣ୍ଡବ ନୃତ୍ୟରତ
ଶତ ଶତାବ୍ଦୀ ହୃତପିଣ୍ଡ ଶୋଣିତେ ଲୋହିତ ଏ ମାୟାପଥ
ନିର୍ଭୀକ ଉଦ୍‌ବେଳ ପ୍ରଶମିତ
ବିରାଟ ଜଟୀଳ କୁଟିଳ ଏ ପଥ ଦୁର୍ଗମ କଙ୍କରିତ ।
ଧୂର୍ଜ୍ଜଟୀ ଜଟା ଚକ୍ରଆବର୍ତ୍ତେ ଫେନିଳ ସାଗରତଳ

ଉଦଗାରେ ତୀବ୍ର ନୀଳାଭ ବର୍ଣ୍ଣ ମାରଣାୟ ହଳାହଳ
ସୀମାରେଖା ଶୂନ୍ୟ ଦୂର ଦିଗ୍‌ବଳୟ ମୂର୍ତ୍ତ ଚଣ୍ଡ ମହାକାଳ
ଅଲକ୍ଷେ ଉଲକା ଯେସେ ତୋ ପଥେ କ୍ଷିପ୍ର ବିଶିଖ ଜାଲ
ରହିଯା ନିର୍ଭୀକ ମୃତ୍ୟୁଯାତ୍ରୀ, ଘନ ଘଟା ଘୋର ବଜ୍ର ଆରବେ
ଆକ୍ରୋଶେ ମହାଗର୍ତ୍ତି ।
ତବ କଳ୍ପନା ସଂଘର୍ଷେ ବହେ ତରଳ ଧାତବ ସ୍ରୋତ
ଧ୍ୱନି କଦର ଧ୍ୱନି ମହାକାଶ ଉତ୍ତରଳ ମୃତ୍ୟୁ ପଥ
ଶିବ ତାଣ୍ଡବ ଅବ୍ଧି ଉରସେ, ସୃଜେ ଗୂଢ଼ ବଭୀଷିକା
ମରଣ ତୀବ୍ର ଅନଳ ଉଦ୍‌ଗାରେ ଲୁପ୍ତ ଜୀବନ ଶିଖା
କ୍ଷାନ୍ତ ନିର୍ଭୀକ ବୀର ଯାତ୍ରୀ
ପ୍ରଳୟ ପାତାଳୁ ନିର୍ଗତ ଭୀମ ଉଚ୍‌ଫଣ ମହାଗର୍ତ୍ତି ।
ଜେନାରଲ୍‌ ଟିମାୟଙ୍କ ୫୫୫ ଶତ୍ରୁ ଶିବିର ଆକ୍ରମଣରେ ପୋଗ ଯାତ୍ରା ।



## ଖଡ଼ିଆଳ ଦରବାର

ଅଧ୍ୟାପକ ଶ୍ରୀରାମଚନ୍ଦ୍ର ମିଶ୍ର

କି ହେଲରେ କି ଦେଖୁଛି ନେତ୍ର ଆଜ
ଏହି ଦେଖ ଖଡ଼ିଆଳ ଦରବାର ଆଜ
ଉଭ ସତେ ଅତୀତର ଗୌରବ ଗଜ
ଇଟା ସିମେଣ୍ଟ ଅବା ଶିଳାରେ ବନ୍ଧା
ହୋଇନାହିଁ ଏହା କେବଳ ଯେ ଛନ୍ଦା
ବାଣୀ ଆରାଧନା ପୂଜା ସୁଶାସନେ
ବିଦଡିତ ସତେ ଅବା ଅପ୍‌ସର ଭୁବନେ

ଏହି ଦରବାରେ ଜନ୍ମିଥିଲେ ଦ୍ୱିତୀୟ ଉପେନ୍ଦ୍ର ଭଞ୍ଜ
ଅବା ଉତ୍କଳ ବିକ୍ରମାଦିତ୍ୟ (ନାମଥିଲା ବୀରବର କବିବର ରାଜା
ବ୍ରଜରାଜ ପ୍ରଜାନୁରଞ୍ଜକ ସଦ୍‌ଗୁଣେ ବିଭୂଷିତ)
ନାଟ୍ୟକାର ବୀରବିକ୍ରମ ଦେବ ଓଡ଼ିଆ ନାଟ୍ୟ ସାହିତ୍ୟେ
ରଚିଗଲେ ଅପୂର୍ବ କୋଣାର୍କ
ଆଜି କି ଦେଖୁଛ ମ୍ଳାନ ବିଷର୍ଣ୍ଣ ବଦନା
ଦରବାର ପ୍ରତିକୋଣୁ ଉଠି ଉଠେ ପୂର୍ବର ବାସନା
ବର୍ତ୍ତମାନ ରାଜନୈତିକ ନିରାଶାବାଦର
ଦୁର୍ନୀତି ଅନ୍ୟାୟ ଅତ୍ୟାଚାରୀ ସମାଜର
ପ୍ରତିଧ୍ୱନି ଉଠିଉଠେ କବି ସୌରଭ ଅନୁପଙ୍କ ବଳିଷ୍ଠ ଲେଖନୀରୁ ।
ଦରବାରେ ଉଭା ଆଜି ସାହିତ୍ୟ ସମିତି
ବାଣୀ ଆରାଧନା ପାଇଁ ସର୍ବଦା ସେ ବ୍ରତୀ
ଏହିଠାରେ ପ୍ରଜା ପାଇଛି ସୁଶାସନ
ଏହିଠାରେ ବିଦ୍ୱାନଙ୍କ ହୁଏ ମୂଲ୍ୟାଙ୍କନ ।
ଜ୍ଞାନୀ, କବି, ବିଦ୍ୱାନ, ଜ୍ୟୋତିଷ
କଳା ବିଶାରଦ ଚିକିତ୍ସକ ପଣ୍ଡିତେ ବିମଣ୍ଡିତ
ଜୀବନ୍ତ ବିଗ୍ରହ ଅହା ଏହି ଦରବାର ।
ଖଡ଼ିଆଳ ମଥାମଣି ଓଡ଼ିଆ ସାହିତ୍ୟର ନେତ୍ରମଣି
ଅମୂଲ୍ୟ ରତ୍ନଙ୍କ ଖଣି ବଞ୍ଚି ରହି ହେଉଥାଅ ପଥ ପ୍ରଦର୍ଶକ ।



# ପ୍ରଣତ ଜଣାଏଁ

ଅଧ୍ୟାପକ ଶ୍ରୀ ପଞ୍ଚାନନ ମିଶ୍ର

ପ୍ରଣତି ଜଣାଏଁ ତୋତେ ଖଡଆଳ
ପ୍ରଣତି ଜଣାଏଁ ଦୂରୁଁ ଗୋ
ପଣତ କାନିରେ ବାନ୍ଧିଛୁ କେତେ
ପୂର୍ଣ୍ଣମୀ ଶଶି ରହୁ ଗୋ
ଯେବେ ମନ ଯୋତ ଛାଡେ ଏ ଜଗତ
ଅନ୍ଧାର ଆସେ ଛାଇ
ସକାଳ ଗମନେ ଶୁଭ୍ର ଆନନେ
ଦୂରୁଁ ଦଶେ ତୋର ଛାଇ ଗୋ
ମୃଦୁ ହିଲ୍ଲୋଳ ଶିଶୁ କଲ୍ଲୋଳ
ସ୍ୱାଗତିକା ଗାଏ ରହୁ ଗୋ ।
ଦୁର୍ବାର ତୋର ବ୍ରତୀ ସାଧନା
ଦୁର୍ନିବାର ତୋ ପଣ
ଅଭେଦ୍ୟ ତୋର ପ୍ରତିଜ୍ଞ ପ୍ରଗତି
ଅଭିନ୍ନ ତୋର ପଣ ଗୋ
ଗିରିମାଳା ତୋର କୁଟୀର ମେଖଳା
ବସନ ତୋ ଫୁଲ ତରୁ ଗୋ ।
ଆଦିମ ବସତି ଥିଲା ଦିନେ ଏଠି
ଅବଶ ଲଭଇ କଳ୍ପନା
ଶୁଭୁଥିଲା ଦିନେ ମନ୍ଦରେ ତୋର
ବୃଦ୍ଧ ସିଂହର ମୂର୍ଚ୍ଛନା

କହ ଆଉ କେତେ କବି ପ୍ରସବିବେ
ପବିତ୍ର ତୋର ଅନ୍ତରୁ
ବୃଢ଼ଗଢ଼ ଗଲା ଦନେ ବିକ୍ରମ ଗଲା
ରୁଦ୍ର ଆରତ ଗଲା
ହେଲେ ଦେବାଳୟେ ବାଣୀ ବନ୍ଦନ ବଲ୍ଲକୀ ଗାନ ଗଲା
ଉର୍ମି ନାୟକ ସେବକ ଅନୁପ ସମୁଚ୍ଚୟର ମୂର୍ଚ୍ଛନାବାଢ଼
ଲତିକା ନଷ୍ଟଏ ଭୁରୁ ଗୋ
ଆରତୀ ଦେଖାଏ ଦୂରୁ ଗୋ ।
ତୁହି କଲ୍ୟାଣୀ ବିଶ୍ୱ ଜନନୀ ରୂପ ତୋର ଅନୁପମ
ପ୍ରୟାଗ ଦେବୀଙ୍କୁ ବକ୍ଷରୁ ତୋ ଦିନେ ଶରମୁନାଘାତେ ଗମ
ଅଦ୍ୟାପି ତହିଁ ପାପ ଦୂର ଯାଇ ଶୁଣାଯାଏ ଲୋକଠାରୁ ଗୋ
ଯାଉଛି ଗୋ ମାଆ ଫେରି ସେ କାଗରେ
ଲେଖାଅଛି ଯାହା ଭଲେ
ବନ୍ଦୁଥିବି ମୁଁ ନିତ୍ୟ ପ୍ରଭତେ ଦେଖାଦେବୁ ସେହି କାଳେ
କବି ପ୍ରସବନୀ ଯାତ୍ର ଧାରଣୀ
ଶୁଣୁଥିବୁ ଆଉ ପୁରୁ ଗୋ
ପ୍ରଣତି ଜଣାଏଁ ଦୂରୁ ଗୋ ।



## ମେହେରର କବିଙ୍କ ସ୍ମରଣେ

ଶ୍ରୀ ସୋମେଶ୍ୱର ଠାକୁର

ଉତ୍କଳ-ସାହିତ୍ୟାକାଶ ଉଜ୍ଜ୍ୱଳ ଚନ୍ଦ୍ରମା ହେ,
ମେହେରର କବି ତୁମେ କେଉଁ ଶୁଭ କ୍ଷଣେ
ଏ ଧରା ବକ୍ଷରେ ଆସି ଦେଇଗଲ ଯାହା
ଲେଖିବାକୁ ନାହିଁ ଏହି ଲେଖନୀର ଶକ୍ତି ।
ହେ ଶାଶ୍ୱତ ଯଶା ! ତୁମ୍ଭ ଆଗମନେ ଘୁଞ୍ଚିଥିଲା
ଉତ୍କଳ ଜନନୀ ଅଜ୍ଞାନ କାଳିମା !
'ପ୍ରଣୟ ବଲ୍ଲରୀ' କାବ୍ୟ ରସ ଆସ୍ୱାଦନେ
ମୋ ମନ ମଧୁପ ଥରେ ଗଲା ଚହିଁ ଲଖି
ନିରେଖିଲା ପ୍ରତିପଦେ କବିତ୍ୱ ମାଧୁରୀ
ଅପୂର୍ବ ରଚନା ଦେଲା ପ୍ରାଣେ ମୋର
ଅଲୌକିକ ଦିବ୍ୟାନନ୍ଦ ଅଦୃଷ୍ଟ ଅଭୁକ୍ତ !
'ତପସ୍ୱିନୀ' କାବ୍ୟେ ତୁମେ ଢାଳି ମଧୁ ଧାର
କରିପାରିଅଛ ଯାହା ନୁହେ ତାହା କହି
ପ୍ରକୃତି ଚିତ୍ରଣ କାବ୍ୟେ କରି ସଚେତନ
କରିପାରିଅଛ କାବ୍ୟ ସରସ ଜୀବନ୍ତ !
'ଭରତୀ ଭବନା' କାବ୍ୟ କ୍ଷୁଦ୍ର କଲେବର
ହେଲେହେଁ ଏ କାବ୍ୟ ତୁଲେ ସମକକ୍ଷ ନୁହେଁ ଅନ୍ୟ କାବ୍ୟ ।
ଯେହେତୁ ଦେଇଛ ଏଥି ସରସ ବର୍ଣ୍ଣନ ଦ୍ୱି ଅର୍ଥରେ
ରହିଅଛ ଭଷାର ମହତ୍ତ୍ୱ
ପ୍ରକାଶି ପାରିଛ କବି, ତୁମ୍ଭ ସମ କେହି

ରୂପ ଦେଇ ପାରିବେ  କି ନାହିଁ ସେ କଳ୍ପନା
ଅଦ୍ୟ ବା ଭବିଷ୍ୟେ !

ଚନ୍ଦ୍ର ଗ୍ରହଣ ଗୁଚ୍ଛ ରଚନା ଥିଲା  ତୁମ୍ଭ ଜୀବନର
ନୈମିତ୍ତିକ ବ୍ରତ, ତନ୍ମଧ୍ୟରୁ  ଗୁଚ୍ଛଟିକୁ ଦେଇ ଉଚ୍ଚସ୍ଥାନ
ଅବଜ୍ଞତ୍ତ ଶାଶ୍ୱତ ଅକ୍ଷର  କୀରତି !

**

## ପାହାଡ ! ତୁମେ ଆଜି  ହାରଗଲ ମୁଁ  ଜିତଲ

ଶ୍ରୀ ଶତ୍ରୁଜିତ ସିଂହ ଦେଓ

ହେ ପାହାଡ !
ତୁମର ବଜ୍ରଠାରୁ କଠିଣ (ଶକ୍ତ) ବକ୍ଷ
ମୋର ପୌରୁଷର ପ୍ରତୀକ  •
ମୋର ସ୍ୱାଭିମାନ ଗର୍ବର ଜୟଧ୍ୱଜା  ଉଡାଉ ଥିଲା
ମାତ୍ର  ସେ ଦିନ
ମୋର ପ୍ରିୟାର କେଇ  ମାତ୍ର ଅଶ୍ରୁବିନ୍ଦୁ
ମୋର ବିଶାଳ ବକ୍ଷେ ଗଡ
ମୋର ଅଭିମାନର ଶିଳାକୁ ଚୂର୍ଣ୍ଣ ବିଚୂର୍ଣ୍ଣ
କରି ଏକ ସ୍ମୃତି ଚିହ୍ନ କଲା
ମୁଁ ସେ ଦିନ ଭାବିଥିଲି ମୁଁ ପରାଜିତ  ତୁମେ ସଦା ଶକ୍ତ
କିନ୍ତୁ
ଆଜ
ତୁମରି ସେହି ବିଶାଳ ବକ୍ଷେ ବର୍ଷାର  କେଇ ବିନ୍ଦୁ ଜଳ ପଡ

ପ୍ରତ୍ୟେକ ଶିଳାକୁ ବଣ ପ୍ରାନ୍ତରରେ ଗଡାଇ ଗଡାଇ
ନଦୀ ବକ୍ଷେ ବାଲୁକା ରାଶିରେ ପରିଣତ କଲ ।
ଆଉ
ସେଇ ବାଲୁକା ରାଶି ଉପରେ
ମୋର ପ୍ରିୟାର କୋମଳ ପଦ ସ୍ପର୍ଶେ
ଏକ ପଦଚିହ୍ନ ବି ରହିଗଲ ।
ମୁଁ ଉଚ୍ଚ ସ୍ୱରେ ମୁକ୍ତ କଣ୍ଠେ କହିବି
ପାହାଡ ! ଆଜି ତୁମେ ହାରିଗଲ ମୁଁ ଜିତିଲି ।

**

## ମନର ପ୍ରତି ସାନ୍ତ୍ୱନା

ଶ୍ରୀ ନାରାୟଣ ଉରସା ମେହେର

ମାୟା ଫାନ୍ଦେ ପଡ ମନ ନ ହୁଅ ଘାର୍ଣ୍ଣି
ସମୟ ଆସିଲେ ଦିନେ ମିଳବ ଛୁଟୀ
ଧନ ଜନ ସୁତ ଦାର ଆଉର ଗୃହ ପସର
ଯିବା ବେଳେ ନ ଯିବେ ତ ଯିବ ତ ହଟି
ଦୁର୍ଲ୍ଲଭ ମାନବ ଜନ୍ମ ଅଶେଷ କର୍ମେ ଜନମ
କରଇ ଭବ ଚିନ୍ତଣ ସେ ପରମେଷ୍ଠି ।
କେତେ ଦିନ ଥିବ ଜୀବ ଦେହାନ୍ତେ ଏହା ନ ଯିବ
ଅନ୍ତିମ କାଳରେ ମନ ପଡବ ପାଟି
ଆଗତ୍ତୁ ହରି ନାମକୁ ଛାଡଲୁ ଭଗୀବଳକୁ
ପାଟି ଶୁଖିଗଲେ କି କି ପାରିବ ରଟି ।୧।

କେତେ କେତେ ଧର୍ମବୀର ପୁଣି କେତେ କର୍ମବୀର
ଜନ୍ମି ଏ ସଂସାରେ ଗଲେ ଶ୍ମଶାନ ମାଟି
ମର୍ତ୍ତ୍ୟ ମଣ୍ଡଳରେ ଜନ୍ମ ହେଲେ ଦିନେ ମୃତ୍ୟୁ ଜାଣ
ପୂର୍ବ ଜନ୍ମ କର୍ମଫଳ ଭୋଗେ ଜୀବଟି । ୨ ।
ଯାର ଥିବଟି ସୁକୃତ ତାର ହେବ ଜୀବମୁକ୍ତ
ରବ ସୁତ ଦୂତୁଁ ଦେଖି ଯିବଟି ହଟି
ପାପ ପୁଣ୍ୟର ବିଷଦ ଲେଖା ହୁଏ ନିରନ୍ତର
ଚିତ୍ରଗୁପ୍ତ ପଞ୍ଜିକାରେ ରହିଛି କୋଷ୍ଠି ।
କୃଷ୍ଣ ନାମ ବିନା ଆନ ଜୀବର ନାହିଁଟି ତ୍ରାଣ
ଆଗ ମୁକ୍ତି ପଥ ଦେଖ ନାମକୁ ରଟି
**କହେ ଦୀନ ନାରାୟଣ- ଭରସା ମୋ ନାରାୟଣ**
ଏ ଭବ ବନ୍ଧନ ପ୍ରଭୁ ଦେବ କି କାଟି ? । ୩ ।

**

## ଜଗନ୍ନାଥ ଜଣାଣ

ଶ୍ରୀ ଗଣେଶ ସିଂହ ଠାକୁର

ହେ ପ୍ରଭୁ ଦାରୁବ୍ରହ୍ମ ଘେନ ମୋର ଜଣାଣ ନୀଳାଚଳ ବହାରୀ
ବିଷୟ ଭରି ଦୁଃଖ,
କେବେ ନ ମିଳେ ସୁଖ ଦୂରିତ ଦିଅ ମୋ ନିବାରି, ହେ ମହାପ୍ରଭୁ
ନରଭୂଦେଶେ ମୋର ଜନ୍ମି, ଜନ୍ମିଣ ହେଲି ଅକାରଣ ହେ(ମହାପ୍ରଭୁ) । ୧
ଚକ୍ରତୀର୍ଥ ମଧ୍ୟରେ ସିଂହାସନ ଉପରେ ଭ୍ରାତା ଭଗ୍ନି କି ସଙ୍ଗେ ନେଇ
ମଉନେ ରହିଅଛ,

ଦାରୁ ରୂପେ ଶ୍ରୀବକ୍ଷ ଯା ନାମ ଲକ୍ଷ୍ମୀ ଦେବୀ ପାଇଁ, ହେ ମହାପ୍ରଭୁ
କଉସ୍ତୁଭ ମଣି ଯା ତଣ୍ଟିର, ଶଙ୍ଖ ଚକ୍ର ଯାର ହସ୍ତର ହେ (ମହାପ୍ରଭୁ) । ୨
ଧଣ୍ଟାମାଳ ଯାହାର, ଯା ଅଙ୍ଗେ ଦାରୁସାର ପଦ୍ମରେ ସିଞ୍ଜିନୀ ଧାରଣ
ଯାର ବେଗ ଅଭଡା,
କେବେ ନ ହୁଏ ବଢ଼ା, ମହାପ୍ରସାଦ ସେହି ପୁଣ ହେ ମହାପ୍ରଭୁ
ଭବବେ ସେହିଟି ଅମୃତ, ତାହୁଁକେ ନୁହେ କେଉଁ ବିଢ ହେ (ମହାପ୍ରଭୁ) ।୩
ଋଷି ଯୁଗର ଭକ୍ତ ତୁମ୍ଭ ଚରଣାମୃତ, ପାନ କରିଣ ଗଲେ ନଚି
ପଣ୍ଡା ଯେ ପଡ଼ିହାରୀ,
ତୁମ୍ଭର ସେବା କରି, ଆଉ ଯେତେକ ନରନାରୀ ହେ ମହାପ୍ରଭୁ
କ୍ଷେତ୍ରରେଅଛନ୍ତି ଗୋଡାଇ, କଳଯୁଗରୁ ମୁକ୍ତି ହେବାପାଇଁ ହେ ମହାପ୍ରଭୁ) ।୪
ଦୈତ୍ୟ ଦାନବ ଯେତେ ଖଗ ମୃଗ ସହିତେ ସମସ୍ତେ ଯାଇଛନ୍ତି ତରି
ଗଣେଶ ମୂଢ଼ ହୀନ,
ତବ ପାଦରେ ଧ୍ୟାନ ନିଶି ଦିବସେ ଅଛୁ ସୁରି ହେ ମହାପ୍ରଭୁ
ପ୍ରଦାନ କର ଦିବ୍ୟ ଧାମ, ରଟୁ ଯେ ଥିବ ତୁମ୍ଭ ନାମ ହେ (ମହାପ୍ରଭୁ) । ୫



## ବାପାଙ୍କୁ ......

ଶ୍ରୀ ପ୍ରଫୁଲ୍ଲ କୁମାର ସାମନ୍ତରାୟ

ତୁ କାଳେ କହିଥିଲୁ "ଉଦ୍ଭବରେ ମନ ତୋର ନିଜରୁରୁ"
ତୋ କଥାକୁ ବୁବେଇଙ୍କ କରୁଛି ତୋ ପାଇଁ
ଥରେ ହେଲେ ପତ୍ରରେ ମନକୁ ତୋ ବର୍ତ୍ତବେକକୁ
ତେଲ ଗୁଣ୍ଡି ମଦାପର ପାଲୁବାଲୁ କରିବାଟା ଉଚତ କି

ଏଇ ଅମୃତର ସନ୍ତାନମାନଙ୍କୁ ........ ?

ଭୂଇଁ ଘୁଞ୍ଚି ଘୁଞ୍ଚି ଯାଏ ପାତାଳ ଆଡକୁ
ଆକାଶ ତ କାହିଁ କେତେ ଦୂରେ

ତ୍ରିଶଙ୍କୁ ପରଯେ ରହି, ବାହୁ ମେଲି

'ତୋ ପୟରେ ଅସ୍ତ୍ର ଭଜ' ଚଢ଼ାବିଲେ

ତୋତେ କ'ଣ ଭଲ ଲାଗେ ........

ଫଳ ଭରା ଲଟୁ ଗଛେ
କଞ୍ଚ ଲିଚୁ ଛଣ୍ଡାଉଛ ବୁଢ଼ୀମାଙ୍କଡଟା

ଦେଖି ନ ଦେଖୁଛୁ ତୁହି

କହ ଭଲା ଏ କେଉଁ ନ୍ୟାୟଟା .......... ?

ବସ୍ ଲାଇଟ୍ ପର ଡମା ଡମା ଡୋଳା ଦିଟା ଧରି
ନିର୍ବିକାରେ ଖାଲି ଦେଖୁଛୁ

ଦେଖି ନ ଦେଖୁଛୁ ବୁଝି ନ ବୁଝୁଛୁ
ଥରେ ହେଲେ ପଚ୍ଛର ମନକୁ ତୋ ବିବେକକୁ

ତା ଶୋଷ ପାଇଁ ରଖି ଥିବା ଜଳ ଟକ

ଆଉ ଜଣେ ଚଳୁ କଲା
ସେ ବିଚରା ଉପାସ ରହିଲା -- ଶୋଷିଲା ରହିଲା

ଆଉ ତୁ ଢଳ ଢଳ କରି ଖାଲି ଦେଖି ରହିଛୁ

ଥରେ ହେଲେ ପଚ୍ଛର ମନକୁ ତୋ ବିବେକକୁ
ବାପା ପଦେ ଅଛୁ ବୋଲି

କାହିଁ କେଉଁ ରଢ଼ୁଆ ଠାଣିରେ
ଏ ଯୁଗେ ବି ରହୁ ଥିବୁ –

ଝୁଲି ଝୁଲି ଘଣ୍ଟାର ଦୋଳକ ପରି

ଟାହିଆ ହଲେଇ । ଟା' ଟା' କରି ?

ଘରର ମୁରବୀ ତୁହି
ତୋ ଆଗରେ ଘଟୁଅଛ ଯାବତ ଅନୀତି
ପଚାରିଲେ କହୁଅଛୁ –
"ହାତ ନାହିଁ ଗୋଡ ନାହିଁ କି କରିବି ମୁହିଁ",
କହ ତେବେ କି ଲୋଡା ତୋ ବସିଥିବା
ଖାଲି ନାଁ ଟାକୁ ବାପାପଦ ବହି ?
ଅହରହ ଯନ୍ତ୍ରଣାର ଗାଡ଼ଆରେ
ଦୁଃଖ ପଙ୍କ ମଧ୍ୟେ ଯଦି ଉବୁଟୁବୁ ହେବା ହୁଏ ସାର
କହ ତେବେ
ତୋ ଶବକୁ କନ୍ଧ ବହି ନେବୁ କାହିଁ ?
କୋଇଲ ବୈକୁଣ୍ଠ ?
ନ ହେଲେ ଉନ୍ନତି
କରୁଛୁ ଶପଥ ନିଶ୍ଚେ ଦିନେ ବହି ନେବୁ
ତୋ ଶବକୁ ସ୍ୱର୍ଗଦ୍ୱାର ।



## ପ୍ରତିଲିପି ଜୀବନର

ଶ୍ରୀ ମହେନ୍ଦ୍ର କୁମାର ମିଶ୍ର

ସାଗରର ଅଇନାରେ ଆକାଶ ଦେଖଇ ନିଜ ମୁହଁ
ତା ନିଜର ମୁହେଁ ଆଉ କେତେ ଗ୍ରହ ତାରକ ଆଲୁଅ
ଆକାଶ ଦଶଇ ଆଉ ସାଗର ଓ ପୃଥିବୀର ଦିଗ୍‌ବଳୟରେ ।
ଆହା କେତେ ଭଲ ଲାଗେ, ନିଜ ମୁହଁ ଅଇନାରେ ଦେଖି,
ନିଜକୁ ସୁନ୍ଦର କହିବାରେ ।।

ଆକାଶ ଦେଖଇ ନିଜ ମୁହଁ, କେତେ ନୀଳ କେତେ ଯେ ସୁନ୍ଦର
ଅଲୁଅର ବ୍ୟବଧାନେ ଅନ୍ଧାରଙ୍କ ଭିଡ, ନୀଳ ଅନ୍ଧକାର ।
ଆକାଶ ନିଜକୁ ଦେଖେ ନିଜ ଦୁଇ ଆଖି ସନ୍ଧାନୀର ଆଖି
ଗଛ ବୃକ୍ଷ ନଈନାଳ-ପାହାଡ ପର୍ବତ-ରକ୍ତିମ କିରଣେ ସତେ ଟାଣିନେଇ
ଆଖିରେ ଥୋଇଛି ।

ସୂର୍ଯ୍ୟ ଆଖି ନେଇ –
ଆଖିରେ ଦେଖୁଛ ତାର ଲୁହର ସାଗର
ମଣିଷ ମନର ।।

ମଣିଷର ଜନ୍ମମୃତ୍ୟୁ ବ୍ୟବଧାନ-ଶୋକଲୁହ, ମୋହ ଆଉ ଭୟ
ବଞ୍ଚିବାର ଇଏ ଏକ ଲିପିବଦ୍ଧ ଜୀବନ୍ତ ଅଧ୍ୟାୟ ।
ଆଶା ଆଉ ନିରଶାର ଆଲୁଅ ଅନ୍ଧାର

ସୁଖରେ ଓଠ-ଉପତ୍ୟକାରେ ହସର ଲହରୀ
ଦୁଃଖରେ ଅମାସିଆ ଅନ୍ଧାରରେ ଜହ୍ନ ନ ଦିଶିଲା ପରି ।

ସାଗରରେ ଆକାଶ ଦେଖଇ କଳାମଣିଷର ଛାଇ,
ଝାଳ ଆଉ ଦେହ ମୁଣ୍ଡ ଅସ୍ତବ୍ୟସ୍ତ ଧୂଳିର ପରସ୍ତ
ଜୀବନର ଲଢେଇରେ ଯିଏ ଧ୍ୱସ୍ତ ପରାଜିତ–ଅସହାୟ

ଶୂନ୍ୟ ଆଖିରେ ଖୋଜଇ ବଞ୍ଚିବାର ସାର୍ଥକତା, ଜୀବନର ଅର୍ଥ
ଭବିଷ୍ୟତେ ରଖିବାକୁ ଦି ଗ୍ରେଟି ଜୀବନ ସନ୍ତକ ରକ୍ତର ।।
ସେ ଦେଖୁଛି ସାଗରର ପ୍ରତିବିମ୍ବେ
କେତେ ଜନ କେତେ ଗତି – ପୃଥିବୀଟା କେତେ ବ୍ୟସ୍ତ
ସୂର୍ଯ୍ୟର ଉଦୟ ସହ

ଚଢେଇର କାକଳୀରେ ଚୁଙ୍ଗା ଫୁଙ୍କେ କାରଖାନା
ପିନ୍ଧିବାକୁ ମଣିଷକୁ ଶ୍ରମର ନିର୍ମୋକ, ହେବାକୁ ଯାନ୍ତ୍ରିକ ।

ଶ୍ରମିକ ତାହାରେ (ଯୁଦ୍ଧପାଇଁ ସୈନ୍ୟସବୁ ବାହାରିଲା ପରି)
କାରଖାନା ଡାକେ – ଶୋଷିବାକୁ ରକ୍ତ, ହୋଇ ଛାରପୋକ ।।
ସେ ଦେଖୁଛି ସାଗରରେ, ଅତିକାୟ ଶୋଷକ ତିମିର –
ବାଧାହୀନ ନିର୍ଦ୍ଦ୍ୱନ୍ଦ୍ୱ କ୍ଷମତାର ମଦମତ୍ତ ଶାସନ ଓ ଶୋଷଣର ମୋହ ।
ଦେହେ ତାର ଶତାବ୍ଦୀର କ୍ଷୁଧା ମନେତାର ସମ୍ରାଜ୍ୟବାଦୀ ପିପାସା –
ସମୁଦ୍ରରେ ନିଜର ଅସ୍ତିତ୍ୱକୁ କ୍ଷମତା କୁର୍ସୀରେ ବସାଇବା ପାଇଁ
ସର୍ବଗ୍ରାସୀତିମୀ – ବାଡବାଗ୍ନି କ୍ଷୁଧା ନେଇ – ଯେତେ ଜଳଜନ୍ତୁର ପରି-
ମିତ ସ୍ୱାର୍ଥ ଭଙ୍ଗ କରେ
ନିର୍ବିଘ୍ନରେ ଗର୍ଭସ୍ଥ କରେ – ହତ୍ୟାକରେ – ନିଶ୍ଚିହ୍ନ କରିଦଏ –
ବିଚରା ନିରୀହ ଜଳଜୀବମାନଙ୍କର ଆଖିରେ ମୃତ୍ୟୁର କରୁଣତାକୁ ଖାତିର
ନ କରି ।।
ଏଠି ପୁଣି ଅକଟୋପାସ୍ ବନ୍ଧନର ତୀବ୍ର ଆଲିଙ୍ଗନେ ।
ସରଳ ହୃଦୟ କୌଣସି ଦେଶପ୍ରେମୀ,
କୂଟ ରାଜନୀତିବାଲାଙ୍କର ମିଛ ଆଦର୍ଶ ଜାଲରେ ପଡ଼ ଛଟପଟ ହୋଇପଡ଼ି
ବନ୍ଧନରେ ପଡ଼େ – ବଚିତ୍ର ଭବରେ ।।
ସାମୁଦ୍ରିକ ଆବେଗର ସାଥେ – ଖଣ୍ଡିତ ପ୍ରତ୍ୟୟର ଭରସାରେ
ଆକାଶ ଦେଖୁଛି ପୃଥିବୀର ଅଗ୍ରଗତି କଚ୍ଛପ ଗତିର
ଧାଁ ଦୌଡ, ଝାଳନାଳ – ଆଶାର ମିନାର । ଜୀବନର ଅର୍ଥ ଖାଲି
ଦେହ ଆଉ ମନର ଯୋଗ ଓ ବିୟୋଗ ।
ମୁଠାଏ ଅନ୍ନ ଆଉ ମୁଠାଏ ଧାର୍ମିକ
ଟିକେ ଆଶା ଓ ସାନ୍ତ୍ୱନା – ହତାଶାର ମରୁବାଲି ଝଡ-ବ୍ୟର୍ଥର ଗଜଲ ।
ଏ ଧରାର ସବୁଜିମା ଗଛ ଓ ପତର
କେତେ ଯେ ବରଷା ଆଉ ତୁଷାରର ହାଡଥରା ଶୀତ ଓ ହେମନ୍ତ

କେତେ ଯେ ସପନ, ସତେ ଋତୁ ବସନ୍ତର,
ଆଖିରେ ଲଗାଇ ଆସେ ମାୟାର ଅଞ୍ଜନ ଆଉ ଗାଥା ପ୍ରେମ ବିରହର
ଏହାପରେ ଆସେ ବୈଶାଖର ଝଡ –
ଆକାଶ ଧୂସର ଆଉ ସାଗରଟି ନୀଳ – ଯେହେତୁ ଏ ଗ୍ରୀଷ୍ମର ସହର ।
ସାଗରର ପୁଣି ଏତେ ଦୁଃଖ, ଏତେ ନିରାଶା ଓ ପ୍ରତ୍ୟାଶା
କେତେ ସମ୍ଭାବନା ଆଉ କେତେ ପ୍ରବଞ୍ଚନା
କେତେ ଅଭିଳାଷ ପୁଣି କେତେ ମୁମୂର୍ଷୁ ଚେତନା ।
କ୍ଷତାହତ ହୃଦୟର ଅବ୍ୟକ୍ତ ବେଦନା ॥

## ଆତ୍ମନୈପଦୀ

ଶ୍ରୀ ରମ ପ୍ରସାଦ ମିଶ୍ର

ଅନେକ ଦିନର ବାସନା
ଫୁଲ ହୋଇ ଫୁଟିଯାଏ
ଶିଳ୍ପୀର ଆବେଗ ନେଇ
ସମୟ ନିର୍ଝରରେ ଅଡ ସେ ଧାବମାନ
ସମସ୍ତଙ୍କୁ କୋଳାଗତ କରି
ଚାଲିଛି ନିଜ ଅଜ୍ଞାତ ପଥେ ।
ଶେଫାଳିର ମନ୍ଦାକିନୀ ଧାରେ
ଗୁଞ୍ଜନ କରୁଛି ଆଜି ପ୍ରଜାପତି ମେଳେ
ତାର ସେହି ଟିକି ଇପ୍‌ସିତ ଆଶା
ନିସ୍ତବ୍ଧ, ନିଷ୍ଫଳ ଅଛ ସେହି ସାଗର ତିମିରେ

ସମୟ ସ୍ରୋତରେ
ସେ ହୁଏ ହନ୍ତସନ୍ତ
ତଥାପି, ଅନ୍ତଃସ୍ଥଳେ ଜାଗ୍ରତ ହୁଏ
ନବ କଳ୍ପିତକୁ ସୁରଭିତ କରି
ବୋଳିବାକୁ ପବିତ୍ରତାର ସୋମ୍ୟାଞ୍ଜନ ।
କଣ୍ଟକର ସୀମାହୀନ ଦରିଆରେ
ସେ ଆଜି ଉପନୀତ
ସମସ୍ତ କଷ୍ଟ ଏବଂ ସାଧନାକୁ
ଉସାଡ଼ ଦେଉଛି ଏକ
କରୁଣ ସମୀରର ହିନ୍ଦୋଳରେ———।



## ଜାଗରଣ

ଶ୍ରୀ ଭୁବନେଶ୍ୱର ଦଣ୍ଡସେନା

ଶୂର ବୀର କ୍ଷତ୍ରିୟ ବାନା,
ଉଡ଼ନ୍ତ ଉଡ଼ୁଛି ଉଡ଼ବ କି ନା ? (ଘୋଷା)
କ୍ଷତ୍ରୀ କ୍ଷେତ୍ରେ କରଇ କ୍ଷତ୍ର,
ହସ୍ତେ ଧରି ଅସ୍ତ୍ର ହୋଇ ପବିତ୍ର ।
ସେ ପବିତ୍ର ଅସ୍ତ୍ର, ଦେଖିବ କି ନେତ୍ର,
ହୃଦୟରେ ଭବ କରେଁ ସ୍ଥାପନା ।୧।
କର୍ମ ଭୂମି ଥିନା ଏ ଦେଶ,
ଅକର୍ମରେ ରଖଇ ଶେଷ ।

ଅକର୍ମଟି ଏକା ଇଚ୍ଛା ଦ୍ୱେଷ ସୁଖ;
ଦୁଃଖ ଶରୀରରେ ଦଏ ଚେତନା । ୨ ।
ନିଷ୍ଠା ରଖି ଅଧ୍ୟାତ୍ମ ଜ୍ଞାନ,
ତତ୍ତ୍ୱ ଜ୍ଞାନେ ତା ପ୍ରୟୋଜନ ।
ଅଜ୍ଞାନ ନାଶଇ ଜ୍ଞାନ ଖଡଗରେ,
ମେଣ୍ଟଇ ଘବନା ଦ୍ବନ୍ଦ୍ୱ ଯାତନା । ୩ ।
କ୍ଷତ୍ରୀ ଯୋଗ ସ୍ଥାପିତ ଜ୍ଞାନ,
ଗୀତା ଘବେ ଦିଏ ପ୍ରମାଣ,
ତତ୍ତ୍ୱ ଭାବନାରେ ନିବେଶି କର୍ମରେ,
ସ୍ଥାପିବ ଜଗତେ କୀରତି ବାନା । ୪ ।
ଆହେ କ୍ଷତ୍ରୀ ଛାତ୍ର ସମାଜ,
ମୂଳଦୁଆ ସଜାଅ ସାଜ ।
ବଢୁଆଟି ଦୁଇ ଚତ୍ରରୁ କୁଣ୍ଡାଏ,
ତୁଳସୀ ବାସନା ମହକେ ଜଣା । ୫ ।
ପ୍ରସ୍ଫୁଟିତ ହେବାକୁ ବେଳ,
ଆସୁଅଛ କର ଖିଆଲ ।
ତବ କୀର୍ତ୍ତିମାନ ରଟିବ ଭୁବନେ,
ସ୍ୱର ମିଶାଇଣ ଗାଇବ ଗାନା । ୬ ।



# ✱ ସ୍ଥଳପଦ୍ମ ✱

ଶ୍ରୀ ସୁରଜିତ ସିଂହ ମହାରଥୀ ବ: ଏ:
(ଦେଓବାହାଲ)

ଉଦ୍ୟାନ ମଧ୍ୟରେ ଫୁଟିଥିଲା
ନାଲି ଟୁକୁ ଟୁକୁ ଗୋଟିଏ ଗୋଲାପ ।
ଏବଂ
ଥରି ଥରି ପବନରେ ଖେଳୁଥିଲା ଦୋଳି
ମୁଗ୍ଧ ନେତ୍ରେ ରହିଁଥିଲି ସେହି ଗୋଳାପକୁ –
ପିଇ ଯାଉଥିଲି ତା'ର ଅତୁଳ ସୌରଭ ।
ଇଚ୍ଛା ହେଲା ହାତେ ଧରି-
ଦେଖନ୍ତି ଆହୁରି ପାଖରୁ
ପୁଲକିତ ହୁଅନ୍ତି ମୁଁ ତାହାରି ପରଶେ ।
ହାତ ବଢାଇଲି ତୋଳିବାକୁ,
କିନ୍ତୁ, କଣ୍ଟା !!!
"ଆଃ"
ଗୋଲାପର କଣ୍ଟା ବାଧା ଦେଲା
ସେ ଯେପରି କହୁଥିଲା –
ସୌନ୍ଦର୍ଯ୍ୟ ନୁହେ ଛୁଇଁବାର
ଅଟେ କିନ୍ତୁ ଅନୁଭବ ପାଇଁ ।"



# ✱ ଉଷା ✱

ଶ୍ରୀ ପ୍ରଫୁଲ୍ଲ ରଉତ

ଧୀରେ ଧୀରେ ନିଶିବିଦାୟ    ନେଲା ଧରା ପୃଷ୍ଠରୁ
ଛପି ଛପି ଉଷା ସୁଷମା    ବିକଶିଲା କୁଞ୍ଜର ।୧।
ଧୀରେ ଧୀରେ ତମ ସଙ୍ଗିନି,    ଲୁଚି ଗଲେ ଅମ୍ବରୁ
ଧୀରେ ଧୀରେ ଶଶୀ ଦିଶିଲେ,    ମ୍ଲାନ ଉଷା ତେଜରୁ ।୨।
ଧୀରେ ଧୀରେ ନଭ ଉତ୍ତର,    କୋଣେ ଦନୁଜ ଗୁରୁ
ମନ୍ଦେ ମନ୍ଦେ ଜ୍ୟୋତି ବିକଶି,    ଉଭା ହେଲେ ଗମ୍ଭୀରୁ ।୩।
କିବା ତନ୍ଦ୍ରାଚ୍ଛନ୍ନ ଜୀବଙ୍କ    ମୋହ ମୋଚନ ପାଇଁ
ସଞ୍ଜୀବନୀ ସୁଧା ଢାଳନ୍ତି    ଗୁରୁ ସଦୟ ହୋଇ ।୪।
କିବା ଉଷାରଣୀ ମଙ୍ଗୁଳେ    ଘେନି ହୀରକ ତୁଣା
ଭାନୁ ଆଗମନ ବାର୍ତ୍ତାରେ    ଉବେ ହୋଇଛ ବଣା ।୫।
ଧୀରେ ଧୀରେ ବହେ ସମୀର    ମନ୍ଦ ସୁଗନ୍ଧ ଭରେ
ଧୀରେ ଧୀରେ ଡାକେ ଭ୍ରମର    ତରୁପୁଷ୍ପ ଗଭରେ ।୬।
ଲୋଟି ପଡୁଅଛି ପ୍ରସୂନ    ମୃଦୁ ମନ୍ଦ ମରୁତେ
ଶୁଭ୍ର ସୁଶୀତଳ ଶିଶିର    ବନ୍ଦୁ ଝରଇ କେତେ ।୭।
କି ଅବା ଭାନୁଙ୍କ ଆସିବା    ପଥେ ଉଷା ସୁନ୍ଦରୀ
ଅନୁରାଗେ ପୁଷ୍ପ ବଛାଏ    ଛିଞ୍ଚି ସୁବାସ ବାରି ।୮।
କିବା ସନ୍ଧ୍ୟାରାଣି ଭାନୁଙ୍କ    ପ୍ରୀତି ପରଶ କାଳେ
ଛିଣ୍ଡିଛି ଗଳରୁ କୁସୁମ    ହାର ପଡ଼ିଛି ତଳେ ।୯।
ଅଥବା ନୟନୁ ଝରାଇ    ନୀର ମୁକ୍ତା ନିନ୍ଦିତ
ବିଦାୟ କରୁଛି ପ୍ରିୟକୁ    ସନ୍ଧ୍ୟା ହୋଇ ଦୁଃଖିତ ।୧୦

ଗୁଣୁ ଗୁଣୁ ହୋଇ ଭ୍ରମର    ବୀଣା ଝଙ୍କାର ତୋଳେ
ତାମ୍ରଚୂଡ଼ ମୂର୍ଚ୍ଛ୍ନା ସ୍ଫୁରଇ    ବେଦ ଓଁକାର ଛଳେ । ୧୧
ଶୁଭ୍ର ବକ ପଂକ୍ତି ଦୋଳାନ୍ତି    ପକ୍ଷ ପ୍ରତୀଚୀ ଖଳେ
ଶୁଭ୍ର ମୁକ୍ତାମାଳ ଅଚାକି    ଝୁଲେ ପୂର୍ବାଶା ଗଳେ । ୧୨
ଶମ୍ଭୁଙ୍କ ଆଳୟେ ଜମ୍ବୁର    ନାଦ ଶୁଭଇ ଧୀରେ
କିବା ଉଷା ଘନୁ ମିଳନ    ବେଣୁ ବାଡେ ଅମ୍ବରେ । ୧୩
ଧୀରେ ଧୀରେ ଉଷା ସୁନ୍ଦରୀ    ବିମ୍ବ ଓଷ୍ଠେ ଚୁମ୍ବିତ
ପ୍ରାଚୀ ନଭେ ଉଭ ହୋଇଲେ    ଦିବ୍ୟ ବେଶେ ମଣ୍ଡିତ ।୧୪
ଅବିର ଚନ୍ଦନ କୁଙ୍କୁମ    ଥୋପି ଖଳ ପଟରେ
ଭୂରୁ ମଧ୍ୟ ସ୍ଥଳ ଛାଡନ୍ତି    ଚନ୍ଦବାକୁ ଘନୁରେ । ୧୫
କିବା ନୀଳମଣି ତୁଣ୍ଡରେ    ହେମ ରେଣୁ ମିଶ୍ରିତ
ଯେନିନ୍ଥ ମଞ୍ଜୁଳେ ପୂର୍ବାଶା    କାନ୍ତ ନିଦେ ବିଦ୍ୟୁତ । ୧୬
କିବା ଚନମଣି ପରଶେ    ଦିଗବଧୂ ସୁଷମା
ଲଜରେ ଝାଉଁଳି ପଡନ୍ତି    ଆଉ ସୁଢ଼ ଲଳମା । ୧୭
ପୂଜା ଉପହାର ସମ୍ଭାର    କର ପଲ୍ଲବେ ଧରି
ବାଳାରୁଣ ପଦେ ଦେଲେ    ଉଷା ରାଣୀ ସୁନ୍ଦରୀ ।୧୮
ଧୀରେ ଧୀରେ ଉଇଁ ଆସଇ    ଚାଳ ଜନକ ରବି
ଚୁମ୍ବି ଚୁମ୍ବି ପ୍ରାଚୀ ଅଧର    ଅବା ପ୍ରଣୟ ଛବି । ୧୯
ସଞ୍ଚି ରଖିଥିଲା ଉଷା କି    ତାର ଶୋଭ ଭଣ୍ଡାର
ଘନୁ ଅଳି ମଦ ମତ୍ତେ କି    ମଧୁ ଢରଇ ଢୁର । ୨୦
କାମେ ବିଭେଳତା ଉଷା କି    ନିଜ ହୃଦ ପଦ୍ମରେ
ଘନୁ ପ୍ରତିଛବ ଆଙ୍କି ସେ    ଲୁଚ ଗଲା ଗମ୍ଭୀରେ । ୨୧
ସତୀ ସାଧ୍ୱୀ ବୀର ବାଳା ଯେ    ନୁହେ କାହିଁରେ ଖେଳ
ନିଖିଳ ମଙ୍ଗଳ କାମନା    ତାର ଏକା ସକଳ । ୨୨

କ୍ଷଣିକ ସୁଖରେ ନୁହେଁ ସେ ସୁଖୀ ପଞ୍ଚ ପ୍ରାଣରେ
ଅମୃତ ଅଧରେ ଚୁମ୍ବି କେ ତାକୁ ଫିଙ୍ଗିଛି ଦୂରେ । ୨୩
କେତେ ତପ କରି ଲଭିଛି ଉଷା ସନୁ ସାନ୍ନିଧ୍ୟ
କର୍ତ୍ତବ୍ୟର ପଥେ ବରିଛି ଶେଷେ ପତି ବିଚ୍ଛେଦ । ୨୪



## ମାଟିମୁଣ୍ଡା ଓ ପେଣ୍ଡୁ

ନୀଳଲୋହିତ ସିଂହ ଦେବ

ହାଓ୍ବା ପୂର୍ଣ୍ଣ ପେଣ୍ଡୁ ।
ମାଟି ମୁଣ୍ଡା ।
ଯେତେବେଳେ ପଡ଼ିଛନ୍ତି ଯୋଡ଼ିଏଁ
ଉଭୟେ ପଡନ୍ତି ତଳକୁ
ତଳେ ପଡ଼, ଏକ ପୁଣି ଉଠେ ଉପରକୁ
ଅନ୍ୟଟି ହରାଏ ବେଗେ
ନିଜର ନିଜତ୍ୱ
ପେଣ୍ଡୁଟିରେ ବାୟୁ ପୂର୍ଣ୍ଣ ପାଇଁ
ଯେହୁ ହୋଇଛ ସହାୟ
ପ୍ରକ୍ଷେପଣ ପରେ
ପୁଣି ଉପରକୁ ଉଠିଲେ ପେଣ୍ଡୁକୁ
ତୋଳ ନେବ ନାହିଁ କି ସେ
ଯତନେ ଆଗ୍ରହେ ?



# ✵ ଜନ୍ମଭୂମି ✵

ଶ୍ରୀ ମୋହିତ ମୋହନ ମହାପାତ୍ର

ପ୍ରକୃତିର କୋଳେ ରହେ ସଂଗୋପନେ
ସୁନା ମାଟି ବକ୍ଷେ ନେଇ
ଏହି ଖଡିଆଳ ଏହି ମୋ ଜନମ ଭୂଇଁ
ଏହାରି ଧୂଳରେ ଗଡ ଗଡ କେତେ
କାନନରେ ପୁଣି ଖେଳ
ଧୀରେ ଧୀରେ ଆଜି ଉଠିଲି ମୁଁ ଠିଆ ହୋଇ ।
ଏହାର ଜଳରେ ପବନରେ ଆଉ
ଧୂଳ ମାଟି ଭରା ରଙ୍ଗେ
ଗଢା ହେଲା ମୋର ପରମାଣୁ ଜୀବନର
'ହୀରମୁଣ୍ଡା' ନୀର ଅମୃତ ପ୍ରକାର
'ନୂଆବନ୍ଧ' ପଦ୍ମ ବାସେ
ଶୁଭ ଗୀତିକା ଗାଇ ଉଠେ ମନ ଭ୍ରମର ।
'ବଡ ମନ୍ଦର'ରେ ଶୁଭ ଶଙ୍ଖ ବାଜେ
ଦେବ ଅରଚନା ପାଇଁ
ଯାହା ପୁଣି ହୁଏ 'ସମଲଇ' 'ରକ୍ତାମ୍ବରୀ'
'ବୁଢଆ' ଶିଖରୁ ଚାଳ ରବ ନିତି
ଯା' ଦର୍ଶନ ଆଶା ନେଇ
ଉଇଁ ଉଈ ଆସେ ବଡାଇ ଭକ୍ତିର ଭେରୀ ।
ରବିରେ ଶୀତଳ ଚନ୍ଦନୀ ଚଦର
ସହାସେ ଘୋଡାଇ ଦିଏ
ଜନ୍ମଭୂମି ମୋର ସୁଖେ ନିଦ୍ରା ଯିବ ବୋଲି

ପବନ ଘୁମର ଘେନି ଉଷ ଧୂଏଁ,
ଚନ୍ଦ୍ରମା ପ୍ରହରି ସାଜି
ଶୀତଳ ଚନ୍ଦନ ସର୍ବାଙ୍ଗେ ଦିଅଇ ବୋଳ ।
'ବାଳକ ବାଳିକା' ଉଚ୍ଚ ବିଦ୍ୟାଳୟେ
ଲବଣୀ ପିତୁଳା କେତେ
ବିଦ୍ୟାଳୟ କରି ମଣିଷ ହୁଅନ୍ତି ସତେ
'ଚରଚଗଢ'ଙ୍କ ସାହିତ୍ୟ ସମିତି
ବାଣୀ ଆରାଧନା କରି
ବନ୍ଧୁ ନିଗାଡ଼ ଝରାଏ ପୀୟୂଷ କେତେ ।
'ବିଜ୍ଞାପିତ କ୍ଷେତ୍ର' ଯୁବକ ସଂଘର
ତୋ ପଦ ବନ୍ଦନା କରି
ଗୋ ଜନ୍ମଭୂମି ! ଶାନ୍ତିର ନିକେତନ ତୋଳେ
ସଂସ୍କୃତି ସଂହତି ଟେକ ରଖିବାର
ସୁମହାନ ବ୍ରତ ନେଇ
"ଜନ୍ମଭୂମି ମୋ ସ୍ୱର୍ଗ" କହି ଦିଏ ନିଜ ଘଳେ ।



## ଅଥବା ସନ୍ୟାସ

ଶ୍ରୀ ଶ୍ରୀବତ୍ସ ଦାଶ

ଜଗତା ! ସଖା ମୋର
ପ୍ରିୟ ବଂଧୁ ପ୍ରାଣର ଦୋସର
ଆ-ଆମେ ଚାଲିଯିବା-
ନୀଳଭୂତ ଉଆସ ଓ ନୀଳବକ୍ଷ କାଳିନ୍ଦୀ ତଟରୁ-

ଭିଜି ଭିଜ ମଧୂଷର ବାସନ୍ତୀ ବାସ୍ନାରେ-
ହଜ ଯିବା ଖୋଜି ଖୋଜ ପ୍ରୀତିର ଫରୂଆ ।
ଆ-ଆମେ ସ୍ଖଳିଯିବା-
ସ୍ନାୟୁର ସହସ୍ର କାମନାର ବୁଲ୍ ବୁଲ୍ ଉଡାଇ
ଅନିର୍ବାଣ ଆତ୍ମାରାମ ମନ୍ତ୍ର ଜପି ଜପି-
ଏ ସହରର ମୁମୂର୍ଷୁ ଗଳିକୁ ପଛ ପରି ଦେଇ ।
ଗୋପଦାନ୍ତ ମନା ହେବା ପରେ-
ଆମେ ଆଉ କଣ କରି ଥା-ଆ-ନ୍ତେ ?
ତଳ ବସ୍ତି ଶେଷ ଗଳି ବତୀ ଖୁଣ୍ଟ ତଳେ,
ମୁଢ ବଙ୍କୁ ଥିବା ମୋଟି ବେଶ୍ୟା ଦୋକାନ ଚାଳରେ –
କେତେ ଦିନ ରହିଥାନ୍ତେ 'ମାଙ୍କଡସା' ସାଙ୍ଗ ?
ଫୁଲ ସଂଜ ଝାପ୍‌ସା ଆଲୁଅରେ –
'ଗରଖ'ଙ୍କ ସଂଖ୍ୟା ଗଣି ଗଣି ।
ପ୍ରିୟ ସଖା ଆମ୍ଭର ଆତ୍ମୀୟ –
ତୁ ଏବେ ନିଜେ କୁହ
ସବୁ କୁଞ୍ଜ ଖାଲି ହେବା ପରେ, ଝରମଲ୍ଲୀ –
ବାସୀ ଚମ୍ପା ସାଉଁଟି, ସାଉଁଟି, ଦେଖି ଦେଖି –
ଝାପ୍‌ସା ଜହ୍ନ ବିଗତ ରାତ୍ରିର, କାଦମ୍ବରୀ ପେଟେ ପିଇ –
ଶୋଇ ଯାଇ ଥା-ଆ-ନ୍ତେ, ବଡ ପୋଲ ଆମ୍ବ ଗଛ ମୂଳେ ?
ଅବା ଆମେ ବୁଲି ଥାନ୍ତେ-
ଖାଉ ପକା ଟୋକା ପଛେ ପଛେ ସାରା ଖରା ବେଳ
ଦେଖି ଦେଖି ପଙ୍କ ଆଉ ତୋଡ ମାଛ ଖେଳ ।
ଅବା ସେହି ଗାଡଆକୁ ମହୋଦଧି କହି,
ଭଜିଥାନ୍ତେ ସାରଦନ ଦାରୁବ୍ରହ୍ମ ପରି ।

ଢକ୍କା ଗତି ମନା ହେବା ପରେ-
ସଂସ୍କାରର ଛିଣ୍ଡା ପର୍ଦ୍ଦା 'ବନାଟି' ବନେଇ,
ବୁଲୁ ଥାନ୍ତେ-ରାଧା ପ୍ରେମ ଗାଇ –
ଏ ସହରରୁ ସେ ସହର ହତାଶ ପ୍ରେମରେ ?
'ନାଁ' ଟା ନିଜଠାରୁ ବଡ ହୋଇଯିବା ପରେ –
ପୁଣି କ'ଣ ଝୁରିଥାନ୍ତେ, ନୀଳଚକ୍ର –
କୋଷ୍ଠୀ ମେଳା, ପତିତ ପାବନ ?
ଆ-ଆମେ ଚାଲି ଯିବା –
ଯନ୍ତ୍ରଣାର ବୋଜଖର, ସବୁ ସ୍ମୃତି ବାନ୍ଧି ବୁଚ୍ଛି ଦେଇ,
ସିଧା ସିଧା ଚାଲିଯିବା ପଛକୁ ନ ଚାହିଁ ।
କ'ଣ ବା ଲୋଡା ଆଉ –
ଏ ସହର ଢୁଆ ଆଡ଼ା ହିସାବ ନିକାସ ।
କେତେ ଦିନ ଶୁଣି ଥାନ୍ତେ ଆଉ –
ଧୋ-ବାୟା, କୋକ ବନା ଲୋଭୀ ?
ଆ-ଆମେ ଚାଲିଯିବା ଏ ସହର ପଛ କରି ଦେଇ
ସେହି ଆମ ପରିଚିତ ପୁରୁଣା ଛକକୁ ।



# ବଞ୍ଚିବାର ଏକ ତୃଷ୍ଣା

ଶ୍ୟାମ ସୁନ୍ଦର ମହାରଣା

ଆଶାର ଏକ ହିମାଳୟ ତୁଙ୍ଗ ପ୍ରାଚୀର
ଜୀବନର ଏକ ନିର୍ଦ୍ଦିଷ୍ଟ ଲକ୍ଷର, ଗଭୀର ଆଲୋଡନ
ସମୟର ଦ୍ରୁତଗାମୀ ଯାନ,
ମନର ଏକ ମାନସିକ ଗୁଞ୍ଜନ,
ସମସ୍ତେ ଆଜ ସଂଗ୍ରାମ ରତ ।
ଈଶ୍ୱର କଣ ଖାଲି ବଞ୍ଚିବାକୁ ଦେଲେ ।
ଆଶା ଏତେ କାହିଁକି ଦେଲେ ।
କିଛି କରି ଭଲରେ ବଞ୍ଚିବା ପାଇଁ,
ଏକ ଅବଶୋଷ ଆତ୍ମା କାହିଁକି ? ଆଜ ବ୍ୟଥିତ –
ଯନ୍ତ୍ରଣାରେ ଆଉଟୁ ପାଉଟୁ ।
କଣ ପାଇଁ ଈଶ୍ୱର ଦେଲେ ନୂତନ ସୃଷ୍ଟି କରି ଏକ
ମହିମାମୟ ଜୀବନ
ଗଠନ ପାଇଁ ଯଦି ଉପାୟ ଓ ଆଶ୍ରୟ ଦେଲେ ନାହିଁ –
ସୁଯୋଗ ଦେଲେ ନାହିଁ ତେବେ ଆତ୍ମା ବଞ୍ଚିବା ପାଇଁ କାହିଁକି
ପ୍ରେରିତ କଲେ ?
ଈଶ୍ୱର ତୁମେ ସତ୍ୟ କୁହ, ତୁମ ପ୍ରତି ଆସ୍ଥା ରଖି କଣ
ଅପେକ୍ଷା କରିଚି କି ବିଶ୍ୱାସର ତୁଙ୍ଗ ହିମାଳୟ ଫିଙ୍ଗି ଦେଇ
କାଳର କରାଳ ତଳେ ମୁଁ ବିଦାୟ ନେବି ।
ମୋତେ ଜବାବ ଦିଅ ଈଶ୍ୱର ।

✱✱

## ଖଡ଼ିଆଳ ଯୁବରାଜ ଶ୍ରୀମାନ ଜିତାମିତ୍ର ସିଂହ ଦେଓଙ୍କ
### -: ବ୍ରତୋପନୟନ ଉପଲକ୍ଷେ :-

୰ ଶ୍ରୀ ସୋମେଶ୍ୱର ପାଣିଗ୍ରାହୀ

### ✱ ଶୁଭାଶିଷ ✱

ଷୋଡଶ ସଂସ୍କାର ମଧ୍ୟେ ବ୍ରତୋପନୟନ,
ସର୍ବଶ୍ରେଷ୍ଠ ଅଟେ ଏହା ଶାସ୍ତ୍ରର ବିଧାନ ।

ଜନ୍ମରୁ ମାନବ ଶୂଦ୍ର ଦ୍ୱିଜ ସଂସ୍କାରରେ,
ବେଦପାଠେ ହୁଏ ବିପ୍ର କଥିତ ଶାସ୍ତ୍ରରେ ।

ବ୍ରହ୍ମଜ୍ଞାନ ପ୍ରାପ୍ତେ ନର ହୁଅଇ ବ୍ରାହ୍ମଣ,
ଆଚରଇ ତବେ ସେହୁ ସତ୍ ଆଚରଣ ।

ଯଜ୍ଞୋପବିତ ଧାରଣ କର୍ମ ଏ ବ୍ରତରେ;
ଅଟଇ ପ୍ରଧାନ କର୍ମ ଯାଜ୍ଞିକ ମତରେ ।

ଆଦିଶକ୍ତି ଗାୟତ୍ରୀଙ୍କ ପ୍ରତୀକ ସ୍ୱରୂପ,
ନର ଦେହେ ରହେ ସଦା ଜାଣ ଯୁବଭୂପ ।

ଉପାସନା ଆରାଧନା ସୁପଥ ମୁକ୍ତିର,
ସାଧ୍ୟ ଏହି ସୂତ୍ର ବଳେ ଜାଣହେ କୁମାର ।

ହେ କୁମାର ମଣି ଏହି ପୂତ ସୂତ୍ର ପାଇ,
ଆଚରିବ ପୁଣ୍ୟ କର୍ମ ଜନହିତେ ଥାଇ ।

ଅବଳା, ଗୋ, ଦ୍ୱିଜ, ରକ୍ଷା କ୍ଷତ୍ରିୟଙ୍କ ଧର୍ମ,
ହିଂସା ନୁହଇ କେବେ ହେଁ ନରେଶତ କର୍ମ ।

କରିବ ନାହିଁ କଦାପି କର୍ମେ ଅବହେଳ,
ସର୍ବତ୍ର ତୁମରି ସାହା ପ୍ରଭୁ ଚକାଡୋଳା ।

✱✱

# ଝରାଫୁଲ

ଶ୍ରୀ ଉଦମଣ ଚନ୍ଦ୍ର ଦତ୍ତ

ପ୍ରଭାତର ଶୁଭ୍ରଲଗନରେ
ଫୁଟିଥିଲା ଫୁଲଟିଏ,
ମଳୟର ମନ୍ଦ ପରଶରେ
ତା ସୁବାସ ଝରୁଥାଏ ।୧।
ଭ୍ରମର ପ୍ରୀତି ଗୁଞ୍ଜନରେ
ଦୋଳାୟିତ ସୁମନସ
ଅବଲୋକି ପ୍ରାଣମନ ମମ
ହେଲା ବଶେଷ ସରସ ।୨।
ତପନର କାମନାଙ୍କ ପରେ
ଧାଇଁ ଗଲି ହରଷରେ
ହେରିବି କମନୀୟ କୁସୁମ
ଫେରିଗଲି ବିରସରେ ।୩।
ଝରଫୁଲ ପଡ଼ନ୍ତ ଭୂତଳେ
ନିର୍ମାଣୀ ନାରୀପରି
ଏତେ ଶୀଘ୍ର ହରଇ ଲାବଣ୍ୟ
ଘୋଟିଗଲା ମହାମାରୀ । ୪ ।
ତଥାପି ଭବିଲି ବିଭୁସୃଷ୍ଟି
ନୁହେଁ ଦୀର୍ଘ ଅବା କ୍ଷୀଣ
ଯେ ସୁନ୍ଦର ହେବି ତାଙ୍କୁ ଥରେ
ଧନ୍ୟ ହେବ ମୋର ପ୍ରାଣ । ୫

-*-

# କବି ପରିଚୟ

– ପୂର୍ବାର୍ଦ୍ଧ –

ଶ୍ରୀମତୀ ନଳିନୀ କୁମାରୀ (ଗୋଲାପ) – ୧୯୪୬ ମସିହାରୁ ୧୯୫୦ ପର୍ଯ୍ୟନ୍ତ ଖଡ଼ିଆଳ ବାଳିକା ଉ: ପ୍ରା: ବିଦ୍ୟାଳୟରେ ଶିକ୍ଷୟିତ୍ରୀ କାର୍ଯ୍ୟ କରିଥିଲେ । ସେ ନିଜକୁ ଗୋଲାପ ନାମରେ ଅଭିହିତ କରି କବିତା ଲେଖୁଥିଲେ ।

ଶ୍ରୀ ତ୍ରିବିକ୍ରମ ମୁଣ୍ଡ – ୧୯୩୦ମସିହାରେ ଖଡ଼ିଆଳରେ ଜନ୍ମ । ସେ ହାଇସ୍କୁଲରେ ଛାତ୍ରଥିବା ସମୟରେ କବିତା ଲେଖୁଥିଲେ ।

ଶ୍ରୀ ଜିତ୍‌ବାହନ ପଟେଲଙ୍କ ଜନ୍ମ ତା: ୨୦।୪।୧୯୨୯ ନୂଆପଡ଼ା ନିକଟବର୍ତ୍ତୀ ଗଡ଼ଡୋଗ ଗ୍ରାମରେ । ରାଜା ଆର୍ତ୍ତତ୍ରାଣ ଉଚ୍ଚ ବିଦ୍ୟାଳୟରେ ଅଧ୍ୟୟନ କାଳରେ ସେ କବିତା ଲେଖୁଥିଲେ । ବର୍ତ୍ତମାନ ସେ ବିଭିନ୍ନ ଗ୍ରନ୍ଥ ସମୀକ୍ଷାରେ ମନୋନିବେଶ କରୁଛନ୍ତି ।

ପଣ୍ଡିତ ଶ୍ରୀ ଦାମୋଦର ମହାପାତ୍ର – ପୁରୀ ଜିଲ୍ଲା ବାଣପୁରର କୁମାରଙ୍କା ଶାସନରେ ଜୁଲାଇ ୮ ତାରିଖ ୧୯୧୦ ମସିହାରେ ଜନ୍ମ ଗ୍ରହଣ କରିଛନ୍ତି । ୧୯୪୪ ଖ୍ରୀ ଅ ରେ ରାଜା ଆର୍ତ୍ତତ୍ରାଣ ଉଚ୍ଚ ବିଦ୍ୟାଳୟରେ ସଂସ୍କୃତ ପଣ୍ଡିତ ଭାବରେ ନିଯୁକ୍ତି ପାଇ ଖଡ଼ିଆଳରେ ଅବସ୍ଥାନ କରିଥିଲେ । ସେ ୧୯୪୫ ରୁ ୧୯୫୮ ମସିହା ଯାଏ ଖଡ଼ିଆଳ ସାହିତ୍ୟ ସମିତିର ସଂପାଦକ ଦାୟିତ୍ୱ ବହନ କରିଥିଲେ । ଶ୍ରୀ ମହାପାତ୍ର ବହୁ ସାହିତ୍ୟିକ ଅନୁଷ୍ଠାନ ସହିତ ସଂପୃକ୍ତ ଓ ପୁରସ୍କୃତ । ସଂପ୍ରତି ବାଲେଶ୍ୱର ଜିଲ୍ଲା ଉଦ୍ଦଖ ନିକଟ ବାଗୁରାଇ ଗ୍ରାମରେ ଅବସ୍ଥାନ କରୁଛନ୍ତି ।

ସ୍ୱର୍ଗତ ଶ୍ରୀ ମନୋହର ମେହେର – ଏ ଅଞ୍ଚଳରେ ଜଣେ ପଲ୍ଲୀ କବି ଭାବରେ ସୁପରିଚିତ । ତାଙ୍କ ପୂର୍ବ ପୁରୁଷମାନେ ବୋଡ଼ାସମ୍ବର ପଦ୍ମପୁରର ବାସିନ୍ଦା ଥିଲେ । କବିଙ୍କ ଜନ୍ମ ହିନାପାଲି ଗ୍ରାମରେ ୧୮୮୪ ଖ୍ରୀ:ଅ:ରେ ହୋଇଥିଲା । ସେ ପ୍ରାୟ ୨୫ବର୍ଷ ବୟସରେ କବିତା ଲେଖିବା ଆରମ୍ଭ କରିଥିଲେ । 'ଚିନ୍ତାମଣି ଚଉତିଶା' ତାଙ୍କର ପ୍ରଥମ ରଚନା । ବାଣୀ ସେବାରେ

ଅହରହ ରଚଥାଇ, ସ୍ତ୍ରୀ ପୁଷ୍ପବତୀ, ବିବାହ ଦଶମେଳକ, ରଘୁ ଅରକ୍ଷିତ ଅହଲ୍ୟାସ୍ତବ, ଡାଲିଫୁଲ, ରାମାୟଣ, ଗୋବିନ୍ଦ ଚନ୍ଦ୍ର ଲୀଳା, କବିତାବଳୀ ଓ ଫୁଲତୋଳା ଆଦି ୩୦ ଖଣ୍ଡ କ୍ଷୁଦ୍ର କବିତା ତଥା କେତେଖଣ୍ଡ ନାଟକ, ବ୍ରତ ଓ ପୁରାଣ ରଚନା କରିଛନ୍ତି । ୧୯୩୪ ମସିହାରେ ଖଡ଼ିଆଳ ରାଜା ଆର୍ତ୍ତତ୍ରାଣ ଦେବ ତାଙ୍କୁ କବି ଭାବରେ ସମ୍ମାନିତ କରି ପ୍ରଶଂସା ପତ୍ର ପ୍ରଦାନ କରିଥିଲେ । ୧୯୬୭ ଖ୍ରୀ:ଅ:ରେ ସେ ଖଡ଼ିଆଳ ସାହିତ୍ୟ ସମିତି ଦ୍ୱାରା ସମ୍ବର୍ଦ୍ଧିତ । ତା: ୯ । ୧ । ୧୯୬୮ରେ ତାଙ୍କର ଦେହାବସାନ ଘଟିଛି ।

କବିରାଜ ଶ୍ରୀ ପ୍ରୟାଗଦତ୍ତ ଯୋଷୀଙ୍କ ଜନ୍ମ ଖଡ଼ିଆଳ ବ୍ରାହ୍ମଣ ପଡ଼ାରେ ପବିତ୍ର ଶ୍ରୀପଞ୍ଚମୀ ୧୯୧୩ ଫେବୃୟାରୀ ୨ ତାରିଖରେ । ସେ ବନାରସରେ ଅଧ୍ୟୟନ କାଳରେ ୪ଖଣ୍ଡ ସଂସ୍କୃତ ଗ୍ରନ୍ଥର ହିନ୍ଦି ଟୀକା ରଚନା କରିଥିଲେ । ଏ ପୁସ୍ତକ ଗୁଡ଼ିକ ପ୍ରକାଶିତ ହୋଇ ତତ୍କାଳୀନ ଆୟୁର୍ବେଦ ପାଠର ପାଠ୍ୟପୁସ୍ତକ ରୂପେ ପ୍ରଚଳିତ ହୋଇଥିଲା । ଶ୍ରୀ ଯୋଷୀ ୧୯୪୦ ମସିହାରୁ ଖଡ଼ିଆଳ ସାହିତ୍ୟ ସମିତି ସହ ଓତଃପ୍ରୋତ ଭାବରେ ଜଡ଼ିତ । ସେ ଅନେକ କବିତା ଓ ଦୁଇଖଣ୍ଡ ନାଟକ ରଚନା କରିଛନ୍ତି । ବର୍ତ୍ତମାନ ସେ ଖଡ଼ିଆଳ ସାହିତ୍ୟ ସମିତିର ସଭାପତି ଏବଂ କୋଶଳୀ ଭାଷା ଗବେଷଣାରେ ରତ ।

ଶ୍ରୀ ଅଚ୍ୟୁତାନନ୍ଦ ପତି - ଖଡ଼ିଆଳରେ କିଛିକାଳ ରାଜସ୍ୱ ଆଦାୟ କର୍ମଚାରୀ ରୂପେ କାର୍ଯ୍ୟ କରିଥିଲେ । ସେ ଖଡ଼ିଆଳ ସାହିତ୍ୟ ସମିତିର ସଂପର୍କରେ ଆସି କେତେ ଖଣ୍ଡ କବିତା ଲେଖିଥିଲେ ।

ଶ୍ରୀମତୀ ପ୍ରବୋଧିନୀ ବେହେରା - ବରଗଡ ଅଞ୍ଚଳରୁ ଆସି ଖଡ଼ିଆଳ ବାଳିକା ୟୁ:ପି: ସ୍କୁଲରେ ଶିକ୍ଷୟିତ୍ରୀ ଭାବରେ ନିଯୁକ୍ତ ହୋଇଥିଲେ । ସେ କେତୋଟି କବିତା ରଚନା କରିଥିଲେ ।

ସ୍ୱ: ଶ୍ରୀ ବିଶ୍ୱନାଥ ମିଶ୍ର - ତାଙ୍କ ପିତାଙ୍କସହ ଗଞ୍ଜାମ ପାରଳାଖେମୁଣ୍ଡି ଅଞ୍ଚଳରୁ ଚାଲିଆସି ଖଡ଼ିଆଳ ନିକଟବର୍ତ୍ତୀ ସାନଦୁହେଲ ଗ୍ରାମରେ ବାସକଲେ । ସେ ଜଣେ ଉଚ୍ଚ କୋଟିର ଅଭିନେତା ଓ ନାଟ୍ୟକାର ଥିଲେ । କେତୋଟି

ନାଟକ ରଚନା କରିଥିବା ଜଣାଯାଏ । ପାଲା, ଚଉପଦୀ, ଭଜନ, ଜଣାଣ ଓ କେତେକ କବିତା ରଚନା କରିଥିଲେ ।

ଶ୍ରୀ ହୃଷିକେଶ ପଟ୍ଟନାୟକ – ଛାତ୍ର ଜୀବନରୁ କବିତା ଲେଖିବା ଆରମ୍ଭ କରିଥିଲେ । ୧୯୩୪ ମସିହାରେ ଖଡିଆଳରେ ତାଙ୍କ ଜନ୍ମ ।

ସ୍ୱର୍ଗତ ଶ୍ରୀ ଶୋଭାଚନ୍ଦ୍ର ବାରିକ – ରାଜା ବୀରବିକ୍ରମ ଦେବଙ୍କ ସମସାମୟିକ ଥିଲେ । ପ୍ରାୟ ଦେଢ଼ ଶହ ବର୍ଷ ପୂର୍ବେ ବଲାଙ୍ଗିର ଜିଲ୍ଲାନ୍ତର୍ଗତ ମୌଜା ଚିଚିପାଲିରେ ତାଙ୍କ ଜନ୍ମ । ପ୍ରୌଢ଼ ଅବସ୍ଥାରେ କାଶୀପଲି ଗ୍ରାମକୁ ଚାଲିଆସି ବାଣୀ ଆରାଧନାରେ ବ୍ରତୀ ହୋଇଥିଲେ । ସେ କାଳରେ ପ୍ରଚଳିତ ଅନେକ ଛାନ୍ଦ, ଚଉପଦୀ, ଭଜନ, ଝୁମ୍ମୁରଗୀତ ସହ ପାର୍ବତୀ ପୂରଣ, ରାଧା ଚଉତିଶା, ଦ୍ରୋଣ ଚଉତିଶା ଓ ରାମ ବିଳାପ ଚଉତିଶା ରଚନା କରିଥିଲେ । ରାମ ବିଳାପ ଚଉତିଶା ପ୍ରକାଶିତ ।

ଶ୍ରୀ ଗୋବିନ୍ଦ ଚନ୍ଦ୍ର ନାୟକ – ତଦାନିନ୍ତନ ନୂଆପଡା ତହସିଲଦାର ଥିଲେ । ସେ ଅନେକ ଉଚ୍ଚ କୋଟିର କବିତା ରଚନା କରିଛନ୍ତି ।

ପଣ୍ଡିତ ଶ୍ରୀ ପୂର୍ଣ୍ଣଚନ୍ଦ୍ର ଠାକୁରଙ୍କ ଜନ୍ମ ୧୯୦୪ ଖ୍ରୀ: ଅ:ରେ ଖଡିଆଳରେ । କାଶୀ ବିଦ୍ୟାଳୟ ପୀଠରେ ସଂସ୍କୃତ ଅଧ୍ୟୟନ କରି ଖଡିଆଳ ମି: ଇ: ସ୍କୁଲରେ ଶିକ୍ଷକ ଜୀବନ ଆରମ୍ଭ କରିଥିଲେ । ସେ କେତୋଟି କବିତା ରଚନା କରିଛନ୍ତି । ଖଡିଆଳ ସାହିତ୍ୟ ସମିତି ଦ୍ୱାରା ୧୯୮୧ରେ ସମ୍ବର୍ଦ୍ଧିତ ।

ଶ୍ରୀ ସଲୋମନ ଛନ୍ଦିୟା – ଖଡିଆଳ ବାଳକ ୟୁ: ପି ସ୍କୁଲର ଶିକ୍ଷକ ଥିଲେ । ସେ ଜଣେ ସାହିତ୍ୟ ସାଧକ ଓ ସମାଜ ସେବୀ ଭାବରେ ସୁପରିଚିତ ।

ଶ୍ରୀ ଶିଶିର କୁମାର ଗୋସ୍ୱାମୀ – ଖଡିଆଳ ରାଜସ୍ୱ ବିଭାଗରେ କାନୁନ୍‌ଗୋ ଭାବରେ କାର୍ଯ୍ୟ କରୁଥିଲେ । ସାହିତ୍ୟ ପ୍ରତି ତାଙ୍କର ଗଭୀର ନିଷ୍ଠା ଓ ଶ୍ରଦ୍ଧା ଥିଲା ।

**ସ୍ୱର୍ଗତ ଉମାକାନ୍ତ ମୁଣ୍ଡ** - ସମ୍ଭ୍ରାନ୍ତ ବ୍ରାହ୍ମଣ ପରିବାରରେ ଖଡିଆଳରେ ଜନ୍ମ ଗ୍ରହଣ କରିଥିଲେ । ସେ କିଛି କାଳ ସରକାରୀ ଚାକିରୀ କରିଥିଲେ । ଖଡିଆଳ ସାହିତ୍ୟ ସମିତି ସଂପର୍କରେ ଆସି କେତୋଟି ଗୀତ ରଚନା କରିଥିଲେ ।

**ଶ୍ରୀ କୁମୁଦ ବନ୍ଧୁ ଯୋଷୀଙ୍କ ଜନ୍ମ** ତା. ୨୭-୧୧-୧୯୩୦ମସିହାରେ ଖଡିଆଳରେ । ସପ୍ତମ ଶ୍ରେଣୀ ଅଧ୍ୟୟନ କାଳରୁ କବିତା ଲେଖିବା ଆରମ୍ଭ କରିଥିଲେ । ତାଙ୍କର ଅନେକଗୁଡିଏ କବିତା ସଂଗୃହୀତ ହୋଇ ପାଣ୍ଡୁଲିପି ଆକାରରେ ଅଛି ।

**ଶ୍ରୀ ଉପେନ୍ଦ୍ର ନାଥ ପଣ୍ଡା** - କରଙ୍ଗାମାଳ ଗ୍ରାମରେ ୧୯୩୧ ମସିହାରେ ଜନ୍ମ । ଗଜ: ଆର୍ତ୍ତତ୍ରାଣ ଉଚ୍ଚ ବିଦ୍ୟାଳୟରେ ଅଧ୍ୟୟନ କାଳରେ କବିତା ଲେଖୁଥିଲେ । ସଂପ୍ରତି ଖଡିଆଳ ବନ ବିଭାଗର ରେଞ୍ଜର ।

**ସ୍ୱର୍ଗତ ଶ୍ରୀ କାମରାଜୁ ଶର୍ମା** – ହୋମିଓପ୍ୟାଥିକ ଡାକ୍ତର ଭାବରେ ଗଡ଼ା ଆର୍ତ୍ତତ୍ରାଣ ଦେବଙ୍କ ରାଜତ୍ୱ କାଳରେ ଗଞ୍ଜାମ ଅଞ୍ଚଳରୁ ଚାଲିଆସି ଖଡିଆଳରେ ବାସ କଲେ । ଖଡିଆଳ ସାହିତ୍ୟ ସମିତିର ସଂପର୍କରେ ଆସି କେତୋଟି କବିତା ରଚନା କରିଥିଲେ ।

**ସ୍ୱର୍ଗତ ଶ୍ରୀମତୀ ଶରତ କୁମାରୀ ଦେବୀ** – ସାନ ଦୁହେଲ ନିବାସୀ ଶ୍ରୀ ବିଶ୍ୱନାଥ ମିଶ୍ରଙ୍କ ତୃତୀୟା କନ୍ୟା । ମାତ୍ର ଦଶ ବର୍ଷ ବୟସରେ ତାଙ୍କର କବିତ୍ୱ ଉଦୟ ହୋଇଥିଲା । ସେ ବହୁ କବିତା, ପ୍ରବନ୍ଧ ଓ ଗଳ୍ପ ଲେଖିଥିବା ଜଣାଯାଏ । ଏସବୁ ଅପ୍ରାପ୍ୟ ।

**ଶ୍ରୀ ଦେବାନନ୍ଦ ସେନାପତି** – ପ୍ରଥମ ଅଞ୍ଚଳାଧିକାରୀ ରୂପେ ୧୯୫୨ ମସିହାରେ ଖଡିଆଳରେ ନିଯୁକ୍ତ ହୋଇଥିଲେ । ସେ ଖଡିଆଳ ସାହିତ୍ୟ ସମିତିର ଜଣେ ସକ୍ରିୟ ସଭ୍ୟଥିଲେ ଏବଂ ନିୟମିତ ଭାବରେ କବିତା ଗଳ୍ପ ଲେଖୁଥିଲେ ।

**ଶ୍ରୀ ପରମ ବ୍ରହ୍ମ ପଣ୍ଡା** – କୋମନା ଥାନାର ଲର୍କି ଗ୍ରାମରେ ଜନ୍ମ । ଛାତ୍ର ଜୀବନରେ ସେ କବିତା ଲେଖୁଥିଲେ । ବର୍ତ୍ତମାନ ସେ ଜୁନାଗଡ ହାଇ ସ୍କୁଲର ପ୍ରଧାନ ଶିକ୍ଷକ ।

**ଶ୍ରୀ ଅଭିନ୍ନ ଚନ୍ଦ୍ର ପାତ୍ରୀଙ୍କ ଜନ୍ମ** ତା- ୧୪ । ୫ । ୧୯୬୯ ଦିନ ବୁଢି କୋମନା ଗ୍ରାମରେ । ସେ ଅର୍ତ୍ତତ୍ରାଣ ଉଚ୍ଚ ବିଦ୍ୟାଳୟରେ ଅଧ୍ୟୟନ କାଳରେ ସାହିତ୍ୟ ପ୍ରତି ଆକୃଷ୍ଟ ହୋଇ କବିତା ଆଦି ରଚନା କରିବାରେ ମନୋନିବେଶ କରିଛନ୍ତି । ଅନେକ କବିତା, ଖଣ୍ଡ କବିତା, ଏକାଙ୍କ ନାଟକ ଓ କେତେ ଗୁଡ଼ିଏ କ୍ଷୁଦ୍ର ଗଳ୍ପ ଲେଖିଛନ୍ତି । ହାସ୍ୟ ରସରେ କବିତା ରଚନା କରିବା ତାଙ୍କ ଅଭିରୁଚି ଅଟେ ।

**ଶ୍ରୀ ଉଦୟକର ଚସଠ** — ରାଜା ବିକ୍ରମ ଦେବଙ୍କ ରାଜତ୍ୱ କାଳରେ ଖଡ଼ିଆଳ ଧୋବା ପଡାରେ ବାସ କରୁଥିଲେ । ସେ ଆଞ୍ଚଳିକ ଖଡ଼ିଆଳି ଭାଷାରେ ହାସ୍ୟରସ ବ୍ୟଞ୍ଜକ ଅନେକ ଗୁଡ଼ିଏ ସରସ କବିତା ଲେଖିଛନ୍ତି । ତାଙ୍କ ବଂଶଧରମାନେ ବର୍ତ୍ତମାନ କୋମନାରେ ବାସ କରୁଛନ୍ତି ।

**ଶ୍ରୀ କୈଳାଶ ଚନ୍ଦ୍ର ଦଣ୍ଡସେନା** — ଖଡ଼ିଆଳ ଅଞ୍ଚଳରେ ଜଣେ ବିଶିଷ୍ଟ କବି ଭାବରେ ସୁପରିଚିତ । ପ୍ରାଚୀନ ନବନାକ ବର୍ତ୍ତମାନର ନେହେନା ଗ୍ରାମରେ ତା- ୪ । ୪ । ୧୯୧୨ ମସିହାରେ ତାଙ୍କ ଜନ୍ମ । କିଶୋର ଅବସ୍ଥାରୁ ବାଣୀ ସାଧନାରେ ଆକୃଷ୍ଟ ହୋଇ ନିରବଚ୍ଛିନ୍ନ ଭାବରେ କାବ୍ୟ କବିତା, ଭଜନ, ଜଣାଣ, ବ୍ରତ ଓ ପୁରାଣ ଲେଖାରେ ବ୍ରତୀ ଅଛନ୍ତି । ସେ ତତ୍ତ୍ୱ ତରଙ୍ଗିଣୀ, ସତସଙ୍ଗ ବାରିଧି ପ୍ରଦକ୍ଷିଣା, କୁସୁମଗୁଚ୍ଛ ତୁଳା ଓ ରାମ ବ୍ରତ କଥା ପ୍ରଭୃତି ଅନେକ ଉପାଦେୟ ଗ୍ରନ୍ଥ ରଚନା କରିଛନ୍ତି । ଖଡ଼ିଆଳ ସାହିତ୍ୟ ସମିତି ଦ୍ୱାରା ୧୯୭୯ ମସିହାରେ ସେ ସମ୍ବର୍ଦ୍ଧିତ ।

**ସ୍ୱର୍ଗତ ଶ୍ରୀ ବିଶ୍ୱନାଥ ପାଇକରାୟ** — ଜଣେ ଶିଶୁ ସାହିତ୍ୟିକ ଭାବରେ ସୁପରିଚିତ । ପୁରୀ ଜିଲ୍ଲା ବାଣପୁର ଅନ୍ତର୍ଗତ ରଷକୁର ଗ୍ରାମରେ ୧୯୦୮ ଖ୍ରୀ: ଅ: ରେ ତାଙ୍କ ଜନ୍ମ । ଚାକିରୀ ଜୀବନରେ କିଛି କାଳ ଖଡ଼ିଆଳରେ ଅବସ୍ଥାନ କରିଥିଲେ । 'ପିଲାଙ୍କ କାହିଁକି' ତାଙ୍କର ଅନୁପମ ରଚନା । ରାଜ୍ୟ ସରକାରଙ୍କ ଠାରୁ ସେ ସମ୍ମାନିତ ଓ ପୁରସ୍କୃତ ।

**ସ୍ୱର୍ଗତ ଶ୍ରୀ ବୈକୁଣ୍ଠ ନାଥ ଦଣ୍ଡସେନା** — ଖଡ଼ିଆଳ ଅଞ୍ଚଳରେ ଜଣେ ପ୍ରତିଷ୍ଠିତ ବ୍ୟକ୍ତି । ୨୯୦୩ ଖ୍ରୀ: ଅ:ରେ ପ୍ରସିଦ୍ଧ ନେହେନା ଗ୍ରାମରେ

ତାଙ୍କ ଜନ୍ମ । ଶିକ୍ଷକ ଜୀବନ ଆରମ୍ଭ କରି ବାଣୀ ସେବାରେ ବ୍ରତୀ ହୋଇଥିଲେ । ପାଲା, ଘୁମୁର ଗୀତ, ଭଜନ, ଜଣାଣ ସହିତ ସତ୍‌ସଙ୍ଗ ସଂହିତା ନାମରେ ଗୋଟିଏ ଉପାଦେୟ ଗ୍ରନ୍ଥ ରଚନା କରିଛନ୍ତି । ସେ ଖଡ଼ିଆଳ ସାହିତ୍ୟ ସମିତିର ଜଣେ ସକ୍ରିୟ ସଭ୍ୟ ଥିଲେ ।

ସ୍ୱର୍ଗତ ଶ୍ରୀ ଆନନ୍ଦ ମୋହନ ବାରିକ-ଛାତ୍ର ଜୀବନରୁ ସାହିତ୍ୟ ପ୍ରତି ଆକୃଷ୍ଟ ହୋଇଥିଲେ । ପଣ୍ଡିତ ଦାମୋଦର ମହାପାତ୍ରଙ୍କ ସାନ୍ନିଧ୍ୟ ଲାଭ କରି କବିତା ଲେଖିବାରେ ମନୋନିବେଶ କରିଥିଲେ । ଆନନ୍ଦ ତରଙ୍ଗ, ଜପମାଳା, ଭକ୍ତି, କବଚା ବଲ୍ଲୀ, ବନ୍ଧ କବିତା ଓ ସାବିତ୍ରୀ ବ୍ରତ ପ୍ରକାଶିତ । ସେ ୧୯୮୧ ମସିହାରେ ଖଡ଼ିଆଳ ସାହିତ୍ୟ ସମିତି ଦ୍ୱାରା ସମ୍ବର୍ଦ୍ଧିତ । ଶ୍ରୀ ବାରିକ ଚୋନପଡ଼ା ଗ୍ରାମରେ ୧୯୨୨ ଖ୍ରୀ: ଅ:ରେ ଜନ୍ମ ଗ୍ରହଣ କରିଥିଲେ ଏବଂ ୧୯୮୧ ମସିହାରେ ତାଙ୍କର ଅକାଳ ବିୟୋଗ ହୋଇଥିଲା ।

ସ୍ୱର୍ଗତ ରୁଦ୍ର ମାଧବ ଦେବ (ବନଫୁଲ)ଙ୍କ ଜନ୍ମ ୩୦ ମଇ ୧୯୦୬ ମସିହାରେ ଖଡ଼ିଆଳରେ । କଲିକତା ବିଶ୍ୱବିଦ୍ୟାଳୟରେ ଅଧ୍ୟୟନ କାଳରେ ସାହିତ୍ୟ ପ୍ରତି ଆକୃଷ୍ଟ ହୋଇ ସମସ୍ତ ଜୀବନକାଳ ସାହିତ୍ୟ ସେବାରେ ନିଜକୁ ଉତ୍ସର୍ଗ କରିଥିଲେ । ସେ ଖଡ଼ିଆଳ ସାହିତ୍ୟ ସମିତିରେ ସଂପାଦକ ଭାବରେ ୧୯୪୬ ମସିହାରେ ନିର୍ବାଚିତ ହୋଇ ଶେଷ ଜୀବନ ଯାଏଁ ଏ ଦାୟିତ୍ୱ ତୁଲାଇ ଥିଲେ । ସାହିତ୍ୟର ଅନୁବାଦ ଦିଗ ପ୍ରତି ମନ ବଳାଇ ରୁବାୟତ ଓମାର ଖୟାମ, ଦୁର୍ଗାସ୍ତୁତି କବିତା ଓ କର୍ଣ୍ଣାର୍ଜ୍ଜୁନ, ପାଷାଣି, ନବ ନାରାୟଣ, ପରପାରେ, ନାଟକ ଓଡ଼ିଆ ଭାଷାରେ ଅନୁବାଦ କରିଛନ୍ତି । କୌତୁକ କୋଳାହଳ ଓ ଅଙ୍ଗଆତ୍ମା ନାଟକ ଅଞ୍ଚଳିକ ଭାଷାରେ ଲିଖିତ । 'ଥୋମାସ ଗ୍ରେ'ଙ୍କ ଏଲେଜି କାବ୍ୟର ଓଡ଼ିଆ ଅନୁବାଦ କରି ପ୍ରଶଂସିତ ହୋଇଛନ୍ତି । ସେ ୧୯୫୬-୧୯୬୦ ଯାଏ ଓଡ଼ିଶା ବିଧାନସଭାର ସଭ୍ୟ ଥିଲେ । ଖଡ଼ିଆଳ କୁସୁମ ୧ମ ଭାଗ, ୨ୟ ଭାଗ, ବଳାହକ ଚଉତିଶା ଓ ସତ୍ୟ ନାରାୟଣ ବ୍ରତ କଥା ସେ ତଥା କବିରାଜ ପ୍ରୟାଗଦତ୍ତ ଯୋଷୀ ସଂପାଦନା କରି

୧୯୫୫ ମସିହାରେ ପ୍ରକାଶିତ କରିଛନ୍ତି । ୬ ଅଗଷ୍ଟ ୧୯୬୦ ଖ୍ରୀ: ଅ: ରେ ତାଙ୍କର ତିରୋଧାନ ଘଟିଛି ।

**ଶ୍ରୀ ହରପ୍ରସାଦ ହୋତାଙ୍କ** ଖଡିଆଳ ଅନ୍ତର୍ଗତ ସାଗୁନଘଡ ଗ୍ରାମରେ ଜନ୍ମ । ରାଜା ଆର୍ତ୍ତତ୍ରାଣ ଉଚ୍ଚ ବିଦ୍ୟାଳୟରେ ଅଧ୍ୟୟନ କାଳରେ କବିତା ରଚନା କରୁଥିଲେ । ବର୍ତ୍ତମାନ ସେ ଭେଳା କାଟଜୁ ହାଇସ୍କୁଲରେ ସହକାରୀ ଶିକ୍ଷକ ଅଛନ୍ତି ।

**ସ୍ୱର୍ଗତ ଶିବ ନାରାୟଣ ଦେବ**-୭ ଫେବୃୟାରୀ ୧୮୭୭ ମସିହାରେ ରାଜା ବ୍ରଜରାଜ ସିଂହ ଦେବଙ୍କ ଔରଷରୁ ମାତା ଧନେଶ୍ୱରୀ ପ୍ରିୟା ଦେବୀ ଗର୍ଭରୁ ଭୂମିଷ୍ଠ ହୋଇଥିଲେ । ସେ ପୂର୍ଣ୍ଣଚନ୍ଦ୍ର ଭଷା କୋଷ ପ୍ରକାଶନ ଦିଗରେ ଶ୍ରୀ ପ୍ରହରାଜଙ୍କୁ ସକ୍ରିୟ ସହଯୋଗ ଓ ଅର୍ଥ ସାହାଯ୍ୟ କରିଥିଲେ । ସେ କବିବର ରାଧାନାଥଙ୍କ ଗ୍ରନ୍ଥାବଳୀ ୧୩ ଏପ୍ରିଲ ୧୯୦୬ରେ ପ୍ରକାଶିତ କରି ଓଡିଶାରେ ଖ୍ୟାତି ଅର୍ଜନ କରିଛନ୍ତି । କବିଙ୍କ କବିତା "ଜାତି ଜାତି ଫୁଲ" ନାମରେ ୧୯୫୨ ମସିହାରେ ପ୍ରକାଶିତ । ସେ ଆଜୀବନ ବାଣୀ ସାଧକ ଓ ଖଡିଆଳ ସାହିତ୍ୟ ସମିତିର ଶୁଭ ଚିନ୍ତକ ଥିଲେ । ୧୯୫୮ ମସିହାରେ ତାଙ୍କ ତିରୋଧାନ ଘଟିଅଛି ।

## ଉତ୍ତରାର୍ଦ୍ଧ

**ଡକ୍‌ଟର ହରେକୃଷ୍ଣ ମେହେରଙ୍କ** ତା ୫ । ୫ । ୧୯୫୬ ମସିହାରେ ଖଡିଆଳ ନିକଟସ୍ଥ ସିନାପାଲି ଗ୍ରାମରେ ଜନ୍ମ । ସେ କବି ମନୋହର ମେହେରଙ୍କ ପୌତ୍ର । ଛାତ୍ର ଜୀବନରୁ ସାହିତ୍ୟ ସାଧନାରେ ବ୍ରତୀ । ତାଙ୍କ ଲିଖିତ ଶ୍ରୀ କୃଷ୍ଣ ଜନ୍ମ, ଶ୍ରୀ ରାମ ରକ୍ଷା ସ୍ତୋତ୍ର, ବିଷ୍ଣୁ ସହସ୍ର ନାମ ଓ ଶିବ ସ୍ତୋତ୍ର ପ୍ରକାଶିତ । ଶ୍ରୀମଦ୍ ଭଗବତ୍ ଗୀତା, କୁମାର ସମ୍ଭବ ଓ ସାବିତ୍ରୀ ନାଟକ ପାଣ୍ଡୁଲିପି ଆକାରରେ ଅଛି । ନୈଷଧ କାବ୍ୟରେ ଦର୍ଶନର ପ୍ରତିଫଳନ ସଂପର୍କରେ ଗବେଷଣା କରି ଡକ୍‌ଟରେଟ ଲାଭ କରିଛନ୍ତି ।

**ଶ୍ରୀ ଭଗିରଥୀ ପଟ୍ଟନାୟକ** – ୧୯୬୯ ରୁ ୧୯୮୦ ଯାଏ ଖଡିଆଳ ପୋଲିସ ଇନ୍‌ସପେକ୍‌ଟର ଥିଲେ । ସେ ଜଣେ ସୁଲେଖକ ।

ଶ୍ରୀ କୃଷ୍ଣ ଦାସ- ନୂଆପଡା ବିଷ୍ଣୁର ବଉଗୀୟ ଜଣେ ମାଜିଷ୍ଟ୍ରେଟ ଥିଲେ । ଛାତ୍ର ଜୀବନରୁ ବାଣୀ ସେବାରେ ନିଜକୁ ନିୟୋଜିତ କରିଛନ୍ତି । ଆଧୁନିକ କବିତା ଲେଖିବା ତାଙ୍କର ରୁଚି ।

ଶ୍ରୀ ପରମ ବ୍ରହ୍ମ ଖମାରୀଙ୍କ ଜନ୍ମ ୧୯୪୨ ମସିହା ଅକ୍ଟୋବର ୪ ତାରିଖରେ କୋମନା ନିକଟବର୍ତ୍ତୀ ଜଗନ୍ନାଥପାଲି ଗ୍ରାମରେ । ସେ କେତେ ଗୁଡ଼ିଏ କବିତା ରଚନା କରିଛନ୍ତି । ସଂପ୍ରତି ପ୍ରାଥମିକ ବିଦ୍ୟାଳୟର ଜଣେ ଶିକ୍ଷକ ।

ଶ୍ରୀ ରାମକୃଷ୍ଣ ନାଅାଲ - ପଲ୍ଲୀଗ୍ରାମ ବିଲଇଅଞ୍ଚଳରେ ତା: ୨।୨।୧୯୪୭ ରେ ତାଙ୍କ ଜନ୍ମ । ୧୯୬୬ ମସିହାରୁ ଶିକ୍ଷକତା କରିବା ସହ ବାଣୀ ଅର୍ଚ୍ଚନା-ରତ ଅଛନ୍ତି । ସେ ଅନେକ ଚଉପଦୀ, ସଂକୀର୍ତ୍ତନ, ଭଜନ, ଖଣ୍ଡକାବ୍ୟ ଓ ସାଂସ୍କୃତିକ ଅନୁଷ୍ଠାନ ସହିତ ସଂପୃକ୍ତ । ତାଙ୍କର କେତୋଟି ପ୍ରବନ୍ଧ ଓ କବିତା ବିଭିନ୍ନ ପତ୍ର ପତ୍ରିକାରେ ପ୍ରକାଶିତ ।

ଶ୍ରୀ କିଶୋର ଚନ୍ଦ୍ର ମହାପାତ୍ରଙ୍କ ଜନ୍ମ ୧୯୪୪ ମସିହା ଖଡିଆଳରେ । ସେ କୃତୀତ୍ୱର ସହ ରେଭେନ୍ସା ମହାବିଦ୍ୟାଳୟରୁ ଉପାଧ୍ୟାୟଙ୍କର ଶିକ୍ଷା ସଂପନ୍ନ କରି ବର୍ତ୍ତମାନ ଖଡିଆଳ ମହାବିଦ୍ୟାଳୟର ଅଧ୍ୟକ୍ଷ । ସେ ଜଣେ ସୁସାହିତ୍ୟିକ ଓ ମାର୍ମିକ କବି ।

ଶ୍ରୀ ରାମଭକ୍ତ ପଣ୍ଡାକାର- ସଂପ୍ରତି କୋମନାରେ ଅବସ୍ଥାନ କରୁଛନ୍ତି । ସେ ବିଦ୍ୟୁତ ବିଭାଗର ଜଣେ କର୍ମଚାରୀ । ଆଧୁନିକ କବିତା ଲେଖିବାରେ ତାଙ୍କର ଅଭିରୁଚି ଅଛି ।

ଶ୍ରୀ ଚଣ୍ଡି ଚରଣ ବିଶି - ଖଡିଆଳ ନିକଟବର୍ତ୍ତୀ ଦମାପଲି ଗ୍ରାମରେ ୧୨।୨।୧୯୩୦ ଖ୍ରୀ: ଅ: ରେ ଜନ୍ମ । ୧୯୫୦ ମସିହାରୁ ପ୍ରାଥମିକ ବିଦ୍ୟା – ଳୟରେ ଶିକ୍ଷକତା ଆରମ୍ଭ କରିବା ସହ ବାଣୀ ଆରାଧନାରେ ବ୍ରତୀ ହୋଇ ଅଛନ୍ତି "ଗୀତା ଭାରତ" "ଯଶୋଧରା" ଓ "ପୁଷ୍ପିତା" ନାମକ ତିନିଖଣ୍ଡ ଛୋଟଛୋଟିଆ ପଦ୍ୟ ପୁସ୍ତକ ରଚନା କରିଛନ୍ତି । ଏ ସବୁ ପ୍ରକାଶିତ ।

ଶ୍ରୀ ନାରାୟଣ ବିଶିଙ୍କ ଜନ୍ମ ୨୯ ଜାନୁୟାରୀ ୧୯୬୩ ମସିହାରେ । କଲେଜ ଛାତ୍ର, ସାହିତ୍ୟ ସେବାରେ ବ୍ରତୀ । ଅନେକ ଆଧୁନିକ କବିତା

ଲେଖିଛନ୍ତି ।

**ଶ୍ରୀ କ୍ଷୀରସିନ୍ଧୁ କଆଲଙ୍କ** ଜନ୍ମ ୧୯୩୪ ମସିହା ଖଡିଆଳ ଢେଲଆ ପଡାରେ । ୧୯୬୪ ଖ୍ରୀ ଅ: ରୁ ସେ ସାହିତ୍ୟ ସାଧନାରେ ମନୋନିବେଶ କରୁଛନ୍ତି । ଅନେକ ଭଜନ, ଜଣାଣ, ଖଣ୍ଡକାବ୍ୟ ତଥା କବିତା ରଚନା କରିଛନ୍ତି ।

**ଶ୍ରୀ ପଦ୍ମଲୋଚନ ପାଢ଼ୀ** ବଲାଙ୍ଗିର ଜିଲ୍ଲାର ପ୍ରସିଦ୍ଧ ମଣ୍ଡଳ ଗ୍ରାମରେ ୧୯୦୭ ଖ୍ରୀ:ଅ: ରେ ଭୂମିଷ୍ଠ ହୋଇଥିଲେ । ୧୯୨୨ ଠାରୁ କୋମନାରେ ବାସ କରୁଛନ୍ତି । ପ୍ରୌଢ଼ ଅବସ୍ଥାରେ ତାଙ୍କର କବିତ୍ୱ ସ୍ଥବ ଉଦୟ ହୋଇଛି । ଅନେକ କବିତା ଓ କୋଶଳ ଭାଷାରେ ରାମାୟଣ ରଚନା କରିଛନ୍ତି । ସେ ଜଣେ ଶିକ୍ଷା ପ୍ରେମି ଓ ସମାଜ ସେବୀ ।

**ଶ୍ରୀ ଅଭୟ ଚରଣ ଚନ୍ଦନଚା:** ୧ । ୧ । ୧୯୪୦ ମସିହାରେ ଖଡିଆଳ ନିକଟବର୍ତ୍ତି କାଶିପଲା ଗ୍ରାମରେ ଜନ୍ମ । ୧୯୬୩ ଖ୍ରୀ: ଅ: ଠାରୁ ସେ ସାହିତ୍ୟ ସାଧନାରେ ରତ । "କବିତା କଦମ୍ବ" "ଅର୍ଜୁନ ପରାଜୟ" ଓ ସୁନ୍ଦରୀ ନଦୀ' ନାମକ ତିନି ଖଣ୍ଡ କବିତା ପୁସ୍ତକ ଲେଖି ଅଛନ୍ତି । ସେ ୧୯୬୩ରୁ ଖଡଆଳ ସାହିତ୍ୟ ସମିତିର ଯୁଗ୍ମ ସଂପାଦକ ଓ ୧୯୭୮ ମସିହାରୁ ପରିକ୍ର-ଜନା ସଂପାଦକ ।

ଇର୍‌ଫାନ ମହମ୍ମଦଙ୍କ ଜନ୍ମ ଖଡିଆଳରେ ୧୩ ଏପ୍ରିଲ ୧୯୪୯ ମସିହାରେ । କବିତା ଲେଖିବା ଛଡା "ପ୍ରଳାପ" ଓ "ବିଳାପ" ନାମରେ ଦୁଇଖଣ୍ଡ କବିତା ପୁସ୍ତକ ଲେଖିଛନ୍ତି । ତାହା ଅପ୍ରକାଶିତ । ସଂପ୍ରତି ସେ ଖଡଆଳ ସାହିତ୍ୟ ସମିତିର ଯୁଗ୍ମ ସଂପାଦକ ଅଛନ୍ତି ।

**ଶ୍ରୀ ବାବୁଲାଲ ଅଗ୍ରୱାଲ** – ଖଡିଆଳ ମହାବିଦ୍ୟାଳୟର ଜଣେ ଛାତ୍ର । ଖଡିଆଳଠାରେ ୧୯୬୪ ଖ୍ରୀ: ଅ: ରେ ତାଙ୍କ ଜନ୍ମ । ଛାତ୍ର ଜୀବନରୁ ସାହିତ୍ୟ ପ୍ରତି ତାଙ୍କର ଗଭୀର ଅନୁରାଗ ରହିଛି । କବିତା, ପ୍ରବନ୍ଧ, ଗଳ୍ପ, ରଚନାରେ ବ୍ରତୀ ଅଛନ୍ତି ।

**ଶ୍ରୀ ବଳଭଦ୍ର ମହାନ୍ତି** – ଖଡଆଳ ନିକଟବର୍ତ୍ତୀ ଲକ୍ଷ୍ମୀପୁର (ଲଛିପୁର) ଗ୍ରାମରେ ତା ୩ । ୧୨ । ୧୯୩୯ ମସିହାରେ ଭୂମିଷ୍ଠ ହୋଇଛନ୍ତି । ସେ

୧୯୬୩ ଖ୍ରୀ: ଅ: ରୁ ସାହିତ୍ୟ ସାଧନାରେ ବ୍ରତୀ ଅଛନ୍ତି । ସମାଲୋଚନା ମୂଳକ ପ୍ରବନ୍ଧ ୧୫୦ ଟି ଆଧୁନିକ କବିତା ଓ ଗୀୟନଧର୍ମୀ ୫୦ ଟି ସଙ୍ଗୀତ ରଚନା କରିଛନ୍ତି । ସେ ଜଣେ ସଙ୍ଗୀତ ସାଧକ ଓ ମଞ୍ଚଶିଳ୍ପୀ ଅଟନ୍ତି ।

ଶ୍ରୀ ସୁଧାକର ମହାନ୍ତିଙ୍କ ଜନ୍ମ ଖଡିଆଳ ନିକଟବର୍ତ୍ତୀ ଲକ୍ଷ୍ମୀପୁର ଗ୍ରାମରେ ତା ୯ । ୫ । ୧୯୫୦ ଦିନ । ବିଶ୍ୱ ବିଦ୍ୟାଳୟ ଅଧ୍ୟୟନ କାଳରୁ କବିତା ପ୍ରବନ୍ଧ ଓ ଗଳ୍ପ ରଚନା ଲେଖିବାର ପ୍ରୟାସୀ ହୋଇଛନ୍ତି । ତାଙ୍କର ଅନେକ ଲେଖା ସମ୍ବଲପୁର ବିଶ୍ୱ ବିଦ୍ୟାଳୟର ମୁଖପତ୍ର "ଶତଦଳପି" ରେ ପ୍ରକାଶିତ । ସେ ୧୯୭୧ ମସିହାରେ ଏମ:ଏ: ଓଡିଆରେ ସର୍ବୋଚ୍ଚ ନମ୍ବର ରଖି ସମ୍ମାନିତ ହୋଇଛନ୍ତି ।

କେପଟେନ୍ ଡାକ୍ତର ଶ୍ରୀ ଦୀନବନ୍ଧୁ ପଟ୍ଟନାୟକ – ଜନ୍ମ ଅକ୍ଟୋବର ୧୯ ତାରିଖ ୧୯୦୭ ମସିହାରେ ଚାମୁଣ୍ଡା ନିକଟବର୍ତ୍ତୀ ନଇ-କୁଳ ଗ୍ରାମରେ । ରାଜା ଆର୍ତ୍ତତ୍ରାଣ ଦେବଙ୍କ ଠାରୁ ବୃତ୍ତି ପାଇ ନାଗପୁର ମେଡିକାଲ କାଲେଜରୁ ପାସ କରି ୧୯୧୧ରେ ଡାକ୍ତର ରୂପେ ସୈନ୍ୟ ବିଭାଗରେ ଯୋଗ ଦେଇଥିଲେ । ଦ୍ୱିତୀୟ ବିଶ୍ୱଯୁଦ୍ଧ କାଳରେ ରୋମ ଆଦି ଯୁଦ୍ଧ କ୍ଷେତ୍ରରେ ଚୀନରେ ସହିତ ଯୁଦ୍ଧ କରି ପୁରସ୍କୃତ ହୋଇଛନ୍ତି । ସେ କିଶୋର ଅବସ୍ଥାରେ ସାହିତ୍ୟ ସାଧନାରେ ବ୍ରତୀ ହୋଇଥିଲେ । ତାଙ୍କ ଲିଖିତ ନାଟ୍ୟକାର ବୀରବିକ୍ରମ ଦେବ ଯୁଗବୀଣା ପତ୍ରିକାରେ ପ୍ରକାଶିତ । ସେ ଅନେକ ଗୁଡିଏ ଖଣ୍ଡ କବିତା, ପ୍ରବନ୍ଧ ଓ କବିତା ଲେଖିଛନ୍ତି । ୧୯୭୮ ମସିହାରେ ସେ ଖଡିଆଳ ସାହିତ୍ୟ ସମିତି ଦ୍ୱାରା ସମ୍ବର୍ଦ୍ଧିତ ।

ଶ୍ରୀ ରାମଚନ୍ଦ୍ର ମିଶ୍ର-ବଳାଙ୍ଗିରର କାଁଧିତା ଓ ଖଡିଆଳ ମହାବିଦ୍ୟା-ଳୟର ଓଡିଆ ଅଧ୍ୟାପକ । ସେ ସାହିତ୍ୟ ସମିତିର ଜଣେ ଉତ୍ସାହୀ ଓ ସକ୍ରିୟ ସଭ୍ୟ । ଶ୍ରୀ ମିଶ୍ର ଜଣେ ସମାଲୋଚକ ଓ ସାମ୍ବାଦିକ ।

ଶ୍ରୀ ପଞ୍ଚାନନ ମିଶ୍ର – ଟିଟିଲାଗଡ ଡ:ଏ ଭ: ମହାବିଦ୍ୟାଳୟର ଓଡିଆ ଅଧ୍ୟାପକ । ଖଡିଆଳ ସାହିତ୍ୟ ସମିତି ସହ ଘନିଷ୍ଠ ସମ୍ପର୍କ ରଖି ବିଭିନ୍ନ ସମୟରେ ସହଯୋଗ କରି ଆସୁଛନ୍ତି ।

ଶ୍ରୀ ସୋମେଶ୍ୱର ଠାକୁରଙ୍କ ଜନ୍ମ ତା. ୨୪ । ୧ । ୧୯୩୪ ମସିହା ଖଡିଆଳରେ । ସପ୍ତମ ଶ୍ରେଣୀ ଅଧ୍ୟୟନ କାଳରୁ ତାଙ୍କ ହୃଦୟରେ କବିତା

ସ୍ଫୁରଣ ହୋଇଥିଲା । "ସାବତ୍ରୀ" ଗୀତି ସୁମନ ୩ଖଣ୍ଡ ଅନୁତାପ ଚୌତିଶା (ପ୍ରକାଶିତ) ରାଧାକାନ୍ତ ଭଣାଣ ମହାଲକ୍ଷ୍ମୀ ଭଣାଣ ଓ ପଦ୍ୟାବଳି ୨ଖଣ୍ଡ ତଥା କବିତା ଗୁଚ୍ଛ ରଚନା କରିଛନ୍ତି ।

**ଶ୍ରୀ ଶତ୍ରୁଜିତ ସିଂହ ଦେବ** ଜନ୍ମ ୧୯୪୬ ମସିହା ଖଡିଆଳରେ । ସେ ଚିତ୍ରଶିଳ୍ପୀ, ସମାଜ ସେବୀ ଓ ସୌଖୀନ୍ କବି ନାଟ୍ୟକାର ଭାବରେ ସୁପରିଚିତ । ସ୍ୱର୍ଗତ କବି ଓ ସୁସାହିତ୍ୟିକ ଶ୍ରୀ ବ୍ରଜମାଧବ ଦେବଙ୍କ ପଞ୍ଚମ ଆତ୍ମଜ । ଖଡିଆଳ ସାହିତ୍ୟ ସମିତିର ପୂର୍ବତନ ସଂପାଦକ ।

**ଶ୍ରୀ ନାରାୟଣ ଭରସା ମେହେର**- କବି ମନୋହର ମେହେରଙ୍କ ଜ୍ୟେଷ୍ଠପୁତ୍ର । ସେ ସତ୍ୟ ନାରାୟଣ ବ୍ରତ କଥା, ସତୀ ସାବିତ୍ରୀ, ପଲ୍ଲୀ ପତନ (ଜ୍ୟୋତିଷ ଶାସ୍ତ୍ର) ଓ ବନ୍ଧ୍ୟା ଚିକିତ୍ସା (ବୈଦ୍ୟଶାସ୍ତ୍ର) ପ୍ରଣୟନ କରିଛନ୍ତି । ଏ ସବୁ ପ୍ରକାଶିତ । ୧୯୮୦ ମସିହାରେ ଖଡିଆଳ ସାହିତ୍ୟ ସମିତି ଦ୍ୱାରା ଶ୍ରୀ ମେହେର ସମ୍ବର୍ଦ୍ଧିତ ।

**ଶ୍ରୀ ଗଣେଶ ସିଂହ ଠାକୁର** ୧୯୭୨ ମସିହାରେ ଖଡିଆଳ ସାହିତ୍ୟ ସମିତିର ସଭ୍ୟ ଶ୍ରେଣୀ ଭୁକ୍ତ ହୋଇ ଭଜନ, ଭଣାଣ ଆଦି ଲେଖିବାରେ ବ୍ରତୀ । ତାଙ୍କ ଲିଖିତ "ଜଳର ମୁକ୍ତି ଭଣାଣ" କବିତା ପୁସ୍ତକ ପ୍ରକାଶିତ । ରାଜା ଅନୁପ ସିଂହ ଦେଓଙ୍କ ଠାରୁ ଜମିଆଦି ପାଇ ମୌଜା ବାଗବାହାଲ ରେ ବାସ କରୁଛନ୍ତି ।

**ଶ୍ରୀ ପ୍ରଫୁଲ୍ଲ କୁମାର ସାମନ୍ତରାୟ**-ବର୍ତ୍ତମାନ ଖଡିଆଳ ସଂଗ୍ରହାଳୟର ସହକାରୀ କ୍ୟୁରେଟର । ୧୯୫୫ ଖ୍ରୀ:ଅ:ରେ କଟକ ଜିଲ୍ଲା ଏରସମା ଥାନା ଅନ୍ତର୍ଗତ ଚାରିବାଟିଆ ଗ୍ରାମରେ ତାଙ୍କର ଜନ୍ମ । କଲେଜ ଛାତ୍ର ଜୀବନରୁ ନାଟକ ଲେଖିବା ଦିଗରେ ପ୍ରୟାସୀ ହୋଇଥିଲେ । 'ପ୍ରୟାଗତୀର୍ଥ' 'ଚାଣକ୍ୟ' ଓ 'ଜରୁରୀ ପରିସ୍ଥିତି' ନାଟକ ଛାତ୍ର ଜୀବନରେ ଲେଖିଥିଲେ । ତାଙ୍କର ଅନେକ ଗବେଷଣାତ୍ମକ ଓ ପ୍ରତ୍ନତତ୍ତ୍ୱ ସମ୍ବଳିତ ପ୍ରବନ୍ଧଗୁଡିକ ଝଙ୍କାର, ଆସନ୍ତାକାଲି ନଗର ଆଦି ପତ୍ରିକାରେ ପ୍ରକାଶିତ ।

ଶ୍ରୀ ମହେନ୍ଦ୍ର କୁମାର ମିଶ୍ର – ଜନ୍ମ ୧-୪-୧୯୪୬ । ୧୯୭୯ ମସିହା ଠାରୁ ବାଣୀ ସାଧନାରେ ବ୍ରତୀ ଅଛନ୍ତି । ଖଡ଼ିଆଳରୁ ପ୍ରକାଶିତ ' କଲ୍ୟାଣୀ'' ମାସିକ ପତ୍ରିକାର ପରିକଳ୍ପନା ସଂପାଦକ ଥିଲେ । ସଂପ୍ରତି କଳାହାଣ୍ଡି ଲେଖକ କଳାପରିଷଦର ଆଞ୍ଚଳିକ ସଂପାଦକ ଅଛନ୍ତି । ତାଙ୍କ ଆଧୁନିକ କବିତା ଗୁଡ଼ିକ ବିଭିନ୍ନ ପତ୍ର ପତ୍ରିକାରେ ପ୍ରକାଶିତ ହେଉଅଛି । ବର୍ତ୍ତମାନ ସେ ସିନାପାଲିରେ ବାସ କରନ୍ତି । ତାଙ୍କ 'ସ୍ମୃତିର ସଙ୍କେତ' କବିତା ପାଠୋତ୍ସବରେ(୧୯୮୧)ପ୍ରଥମ ବିବେଚିତ ହୋଇ ଖଡ଼ିଆଳ ସାହିତ୍ୟ ସମିତି ଦ୍ୱାରା ପୁରସ୍କୃତ ।

ଶ୍ରୀ ରାମ ପ୍ରସାଦ ବଣି – ଜନ୍ମ ତା ୩୦ । ୬ । ୧୯୬୨ ମୌଜା ଭଙ୍ଗପର ଗ୍ରାମରେ । ହାଇସ୍କୁଲ ଜୀବନରୁ ସାହିତ୍ୟ ସାଧନାରେ ବ୍ରତୀ । ମହାବିଦ୍ୟାଳୟର ସାହିତ୍ୟ ସାଂସ୍କୃତିକ ପରିଷଦ ଗଠନରେ ତାଙ୍କ ଅବଦାନ ରହିଛି । ଆଧୁନିକ ଅନେକ କବିତା ଓ ପ୍ରବନ୍ଧ ରଚନା କରିଛନ୍ତି ।

ଶ୍ରୀ ଭୁବନେଶ୍ୱର ଦଣ୍ଡସେନା – କବି କୈଳାଶ ଚନ୍ଦ୍ର ଦଣ୍ଡସେନାଙ୍କ ଜ୍ୟେଷ୍ଠ ପୁତ୍ର । ୧୯୩୩ ମସିହାରେ ତାଙ୍କ ଜନ୍ମ । ବର୍ତ୍ତମାନ ସାହିତ୍ୟ ସାଧନାରେ ବ୍ରତୀ ଅଛନ୍ତି । ଗୀତା ଉପନିଷଦ ଉପରେ ତାଙ୍କର ପ୍ରବେଶ ଓ ଗାଢ ଅନୁରାଗ ରହିଛି । ସମାଜ ସେବାରେ ମଧ୍ୟ ନିୟୋଜିତ ରହିଛନ୍ତି ।

ଶ୍ରୀ ସୁରଜିତ ସିଂହମହାପାତ୍ର – ତା ୨୧ । ୯ । ୧୯୬୨ମସିହାରେ ଖଡ଼ିଆଳ ନିକଟସ୍ଥ ଦେବଡାହାଳ ଗ୍ରାମରେ ଜନ୍ମ । ହାଇସ୍କୁଲ ଜୀବନରୁ କବିତା; କ୍ଷୁଦ୍ର ଗଳ୍ପ ଓ ପ୍ରବନ୍ଧ ଲେଖିବାର ପ୍ରୟାସୀ ହୋଇଥିଲେ । ବର୍ତ୍ତମାନ ସେ ଅନେକ କବିତା ପ୍ରବନ୍ଧ ଓ କ୍ଷୁଦ୍ରଗଳ୍ପ ରଚନା କରିଅଛନ୍ତି ।

ଶ୍ରୀ ପ୍ରଫୁଲ୍ଲ ରାଉତ – ଜନ୍ମ ୧୯୫୪ ମସିହାରେ କୋରାପୁଟ ଜିଲ୍ଲା ଅନ୍ତର୍ଗତ ମୌଜା ସଟ୍ଟେଲ ଗ୍ରାମର । ଟୌଷପୁତ୍ର ଭାବରେ ଆସି ଖଡ଼ିଆଳରେ ଅବସ୍ଥାନ କଲେ । ମାଧ୍ୟମିକ ପ୍ରଶିକ୍ଷଣ କାଳରେ ସାହିତ୍ୟ ପ୍ରତି ଆକୃଷ୍ଟ ହୋଇ କବିତା ରଚନାରେ ମନ ବଳାଇ ଥିଲେ । ଭଜନ, ଜଣାଣ ସହିତ ''ଡାକେ ପାଟ୍‌ଫାନି'' କବିତା ଗୁଚ୍ଛ ରଚନା କରିଛନ୍ତି ।

ଶ୍ରୀ ନୀଳଶୈଳେନ୍ଦ୍ର ସିଂହ ଦେଓ – ଜନ୍ମ ତା ୨୬ । ୧୨ । ୧୯୪୪ । ସେ କବି ସୌରଭ ଅନୁପ ସିଂହ ଦେଓଙ୍କ ମଧ୍ୟମ ପୁତ୍ର । ଅଳ୍ପ ବୟସରୁ ବାଣୀ ଆରାଧନାରେ ବ୍ରତୀ । ତାଙ୍କର ରଚିତ କ୍ଷୁଦ୍ର କାବ୍ୟ "ଛାୟା" ୧୯୮୦ ଓ 'ତୃଷ୍ଣା' ୧୯୮୫ରେ ପ୍ରକାଶିତ । ଅନ୍ତର୍ବ୍ୟଥା କାବ୍ୟ ପ୍ରକାଶୋନ୍ମୁଖୀ । ସେ ୧୯୭୮ ମସିହାରୁ ଖଣ୍ଡଆଳ ସାହିତ୍ୟ ସମିତିର କୋଷାଧ୍ୟକ୍ଷ ଦାୟିତ୍ୱରେ ଅଛନ୍ତି । ତାଙ୍କର ଏକାଧିକ କବିତା ଓ ପ୍ରବନ୍ଧ ଭଗର ମାସିକ ପତ୍ରିକାରେ ପ୍ରକାଶିତ ।

ଶ୍ରୀ ମୋହିତ ମୋହନ ମହାପାତ୍ର – ଜନ୍ମ ୧ । ୧୨ । ୧୯୨୯ । ଓଡ଼ିଶା ସରକାରଙ୍କ ରାଜସ୍ୱ ବିଭାଗ ଅଫିସ, ସମ୍ବଲପୁରରେ ତିନି ବର୍ଷ ଚାକିରୀ କଲାପରେ ଦୀର୍ଘ ତିରିଶ ବର୍ଷ ହେଲା ରାଜା ଆର୍ତ୍ତତ୍ରାଣ ଉଚ୍ଚ ବିଦ୍ୟାଳୟରେ ଶିକ୍ଷକତା କରୁଛନ୍ତି । ଏହି ବିଦ୍ୟାଳୟର ମୁଖପତ୍ର 'ଜ୍ୟୋତ୍ସ୍ନା'ର ସଂପାଦକ । ତାଙ୍କ ଲେଖନୀ ନିଃସୃତ ଓଡ଼ିଆ ଏବଂ ଇଂରାଜୀ ଭାଷାରେ ଜୀବନୀ ଏବଂ ସମାଲୋଚନାମୂଳକ ଗବେଷଣାତ୍ମକ ପ୍ରବନ୍ଧମାନ ସପ୍ତର୍ଷି, ଜ୍ୟୋତ୍ସ୍ନା ଆଦି ପତ୍ରିକାରେ ପ୍ରକାଶିତ । ୧୯୮୨ ଜନଗଣନାରେ ଅସାଧାରଣ ଉତ୍ସାହ ଓ ଉଚ୍ଚକୋଟିର ସେବା ଉପଲକ୍ଷେ ଭାରତର ରାଷ୍ଟ୍ରପତି ପ୍ରଦତ୍ତପଦକ ପୁରସ୍କୃତ । ୧୯୭୮ ମସିହାରୁ ଖଣ୍ଡଆଳ ସାହିତ୍ୟ ସମିତିର ଉପସଭପତି ଅଛନ୍ତି ।

ଶ୍ରୀ ଶ୍ରୀବତ୍ସ ଦାସ – ଜନ୍ମ ୫ । ୧୦ । ୧୯୫୬ ନୟାଗଡ ଗୋବିନ୍ଦପୁର । ସାହିତ୍ୟ ସାଧନା ଛାତ୍ର ଜୀବନରୁ । ଲୋହିତ ଦିଗନ୍ତ (ଉପନ୍ୟାସ) ସମ୍ବାଦ ଚଟୀ ଖୁଣ୍ଟଠାରୁ କବିତା ଗୁଚ୍ଛ, ପଥପ୍ରାନ୍ତେ(କବିତା) କଲେଜ ମାଗାଜିନରେ ପ୍ରକାଶିତ ଏବଂ ଏମିତି (କବିତା) ବିଶ୍ୱବିଦ୍ୟାଳୟ ମାଗାଜିନରେ ପ୍ରକାଶିତ ।

ଶ୍ରୀ ଶ୍ୟାମ ସୁନ୍ଦର ମହାରଣା – ଜନ୍ମ ତା ୧ । ୬ । ୧୯୫୦ ପୁରୀ ଜିଲ୍ଲାନ୍ତର୍ଗତ ଇଟାମାଟି ଗ୍ରାମରେ । ଛାତ୍ର ଜୀବନରୁ କବିତା ଲେଖିବାରେ ଆଗ୍ରହୀ । ତାଙ୍କ ଲିଖିତ ଶାନ୍ତଦୂତ କବିତା ଓ ପ୍ରବନ୍ଧ ଯୁଗର ସ୍ୱପ୍ନ 'ବାମନ ଅବକାଶ' ପତ୍ରିକାରେ ପ୍ରକାଶିତ ।

**ସ୍ୱ: ସୋମେଶ୍ୱର ପାଣିଗ୍ରାହୀ** – ଜନ୍ମ ଖଡ଼ିଆଳରେ । ସେ ରଡ଼ା ଆର୍ତ୍ତତ୍ରାଣ ଉଚ୍ଚ ଇଂରାଜୀ ବିଦ୍ୟାଳୟରେ ଶିକ୍ଷକ ଜୀବନ ଆରମ୍ଭ କରିଥିଲେ । ସେ ଜଣେ ସମାଜ ସେବୀ ଓ ସାହିତ୍ୟ ପ୍ରିୟ ବ୍ୟକ୍ତି ଥିଲେ । ସେ ୧୯୬୮ ମସିହାରୁ ୧୯୭୪ ଯାଏ ଖଡ଼ିଆଳ ସାହିତ୍ୟ ସମିତିର ସଂପାଦକ ଦାୟିତ୍ୱରେ ଥିଲେ । କେତେକ କବିତା ଓ ଦୁଇଖଣ୍ଡ ଅନୁବାଦ ପୁସ୍ତକ ରଚନା କରିଛନ୍ତି ।

**ଶ୍ରୀ ଉମେଶ ଚନ୍ଦ୍ର ଦତ୍ତ** – ବି. ଏ. (ଅନର୍ସ) ଡି. ଏଡ୍(ଫର୍ଷ୍ଟ କ୍ଲାସ୍) ଓ.ଇ.ଏସ(II) । ପୁରୀ ଜିଲ୍ଲାର ଗୋପାଳପୁର ଗ୍ରାମରେ ତା ୧୧।୧୦।୧୯୫୪ ରେ ଜନ୍ମ । ସଂପ୍ରତି ରଡ଼ା ଆର୍ତ୍ତତ୍ରାଣ ବିଦ୍ୟାଳୟର ପ୍ରଧାନ ଶିକ୍ଷକ । ତାଙ୍କ 'ବାରବୁଲ' ଉପନ୍ୟାସ ଓ 'ହୃଦହୀନ' କ୍ଷୁଦ୍ରଗଳ୍ପ ପ୍ରୌଢ଼ଶିକ୍ଷା ବିଭାଗରୁ ପୁରସ୍କୃତ । ଅନେକ ପ୍ରବନ୍ଧ ଓ କ୍ଷୁଦ୍ରଗଳ୍ପ ନବଜୀବନ ପତ୍ରିକାରେ, 'ଷଷ୍ଠ ଶ୍ରେଣୀରେ ଇଂରାଜୀଶିକ୍ଷା' ପ୍ରବନ୍ଧ ଶିକ୍ଷା ଜଗତ ପତ୍ରିକାରେ ଏବଂ 'ହସପେଟ' 'ବାଘମାମୁଁ' ଓ ଅଭିଯାନ ଗଳ୍ପମାଳା ଶୀର୍ଷକ ଶିଶୁ ସାହିତ୍ୟ 'ଛାତ୍ର ସାଥୀ ଇଂରାଜୀ ଗ୍ରାମର୍ ଓ କମ୍ପୋଜିସନ' ପୁସ୍ତକ ପ୍ରକାଶିତ ହୋଇଛି । ସେ ବର୍ତ୍ତମାନ ଭବାନୀପାଟଣାର ସ୍ଥାୟୀ ବାସିନ୍ଦା ।

* ସମାପ୍ତ *

ଖଡ଼ିଆଳ ସାହିତ୍ୟ ସମିତି, ଖଡ଼ିଆଳ

ଦ୍ୱାରା

ପ୍ରକାଶିତ ପୁସ୍ତକାବଳୀ :-

| | |
|---|---|
| ✱ ଖଡ଼ିଆଳ କୁସୁମ (ପ୍ରଥମ ଭାଗ) ବୀରବର ରଚନାବଳୀ | ୧୯୫୫ ଖ୍ରୀ: ଅ: ରେ ପ୍ରକାଶିତ |
| ✱ ଖଡ଼ିଆଳ କୁସୁମ (ଦ୍ୱିତୀୟ ଭାଗ) ଗୀତି ମଞ୍ଜୁଷା | ୧୯୫୫ ଖ୍ରୀ: ଅ: ରେ ପ୍ରକାଶିତ |
| ✱ ସତ୍ୟନାରାୟଣ ବ୍ରତ କଥା | ୧୯୫୫ ଖ୍ରୀ: ଅ: ରେ ପ୍ରକାଶିତ |
| ✱ ବଳାହକ ଚଉତିଶା | ୧୯୫୫ ଖ୍ରୀ: ଅ: ରେ ପ୍ରକାଶିତ |
| ✱ ମୂର୍ଚ୍ଛନା | ୧୯୫୭ ଖ୍ରୀ: ଅ: ରେ ପ୍ରକାଶିତ |
| ✱ ତ୍ରିପତ୍ରୀ | ୧୯୭୮ ଖ୍ରୀ: ଅ ରେ ପ୍ରକାଶିତ |
| ✱ ଛାୟା | ୧୯୮୦ ଖ୍ରୀ: ଅ: ରେ ପ୍ରକାଶିତ |

ପ୍ରାପ୍ତିସ୍ଥାନ :-

ସମ୍ପାଦକ

ଖଡ଼ିଆଳ ସାହିତ୍ୟ ସମିତି, ଖଡ଼ିଆଳ

ପୋ: ଅ: ଖଡ଼ିଆଳ, ଜି: କଳାହାଣ୍ଡି

ଓଡ଼ିଶା - ୭୬୬୧୦୭